# ସ୍ମରଣିକା



ସ୍ୱାଧୀନତା ସଂଗ୍ରାମୀ ସାମ୍ୟବାଦୀ ଗୃଷ୍ଣୀନେତା
ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁଙ୍କ ସ୍ମରଣେ

# ସୂଚନା

ସ୍ୱାଧୀନତା ସଂଗ୍ରାମୀ, ଋଷୀନେତା ସର୍ଦ୍ଦାର ରଥକୃଷ୍ଣ ସ୍ୱାଇଁଙ୍କର ଗତ ୧୯୯୩ ମସିହା ଅପ୍ରେଲ ୨୫ ତାରିଖ ଅକ୍ଷୟତୃତୀୟା ଦିନ ମୃତ୍ୟୁ ଘଟିଥିଲା । ତାଙ୍କର ଏକାଦଶାହ ଅବସରରେ ହଜାର ହଜାର ଜନସାଧାରଣ ଯୋଗ ଦେଇ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳୀ ଜଣାଇଥିଲେ ।

ଯୋଗଦେଇଥିବା ସ୍ୱାଧୀନତା ସଂଗ୍ରାମୀ ଓ ବରିଷ୍ଠ ବ୍ୟକ୍ତିମାନଙ୍କ ପରାମର୍ଶକ୍ରମେ ତାଙ୍କର ପ୍ରଥମ ବାର୍ଷିକ ସ୍ମୃତିଉତ୍ସବରେ ତାଙ୍କ ନାମରେ ଏକ ସ୍ମରଣିକା ପ୍ରକାଶ କରାଯିବାପାଇଁ ନିଷ୍ପତ୍ତି ନିଆଯାଇଥିଲା । ଏଥିପାଇଁ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଏକ "ସ୍ମରଣିକା ପ୍ରକାଶନ କମିଟି" ଗଠନ କରାଯାଇଥିଲା ।

ସର୍ବଶ୍ରୀ ଗୁରୁଚରଣ ପଟ୍ଟନାୟକ—ସ୍ୱାଧୀନତା ସଂଗ୍ରାମୀ

ଗୋବର୍ଦ୍ଧନଚନ୍ଦ୍ର ମହାନ୍ତି — ,, ,,

ନନ୍ଦକିଶୋର ପଟ୍ଟନାୟକ— ,, ,,

ଉପେନ୍ଦ୍ରନାଥ ମହାନ୍ତି — ,, ,, ଓ ପୂର୍ବତନ ବିଧାୟକ

ଲୋକନାଥ ଚୌଧୁରୀ —ସମ୍ପାଦକ, ରାଜ୍ୟ କମ୍ୟୁନିଷ୍ଟପାର୍ଟି ଓ ଲୋକସଭା ସଦସ୍ୟ

ଗଙ୍ଗାଧର ପାଇକରାୟ—ସ୍ୱାଧୀନତା ସଂଗ୍ରାମୀ ଓ କୃଷକ ନେତା

ସୁରେନ୍ଦ୍ରନାଥ ନାୟକ —ରାଜସ୍ୱ ମନ୍ତ୍ରୀ

ବୈକୁଣ୍ଠନାଥ ସ୍ୱାଇଁ —ପୂର୍ବତନ ବିଧାୟକ ଓ ସଭାପତି ପୁରୀଜିଲ୍ଲା କଂଗ୍ରେସ କମିଟି

ସୋମନାଥ ପାଢ଼ୀ —ସଭାପତି, ରାଜ୍ୟ କୃଷକସଭା ଓ ସ୍ମରଣିକା ପ୍ରକାଶନ କମିଟିର ଆବାହକ ।

କେଶବଚନ୍ଦ୍ର ରାଉତ —ପାଟପୁର କେନ୍ଦ୍ର କମିଟି ସଦସ୍ୟ

ଅର୍ଜ୍ଜୁନ ଦାଶ —ସମ୍ପାଦକ, ଉତ୍କଳ ସଂଗ୍ରାମୀ ସ୍ମୃତି ସମିତି, କାକଟପୁର

ପୂର୍ବ ନିଷ୍ପତ୍ତି ଅନୁଯାୟୀ ଓ କମିଟି ସଭ୍ୟମାନଙ୍କ ପରାମର୍ଶ ଅନୁଯାୟୀ ସ୍ମରଣିକାଟି ପ୍ରକାଶ କରାଗଲା ।

ସ୍ମରଣିକା ପ୍ରକାଶନ କମିଟି

# ପ୍ରଣାମ ଘେନ ଆମ

ସଂଗ୍ରାମୀ ମୁକ୍ତିଯୋଦ୍ଧା ପ୍ରିୟତମ
ପ୍ରଣାମ ଘେନ ଆମ
ମୁକ୍ତିଯୁଦ୍ଧ ଇତିହାସେ ରଖିଲ ନାମ ।୦।

ଜୀବନର ପ୍ରତିକ୍ଷଣ କରିଗଲ ଦାନ
ଭଲପାଇ ଶିଖିଥିଲ ମଣିଷ ଜୀବନ
ଜନସେବା ମଣିଥିଲ ପୁଣ୍ୟକାମ
ହେ ପ୍ରିୟତମ...... ।୧।

ଲଢିଲ ସହିଲ ତୁମେ ଜୀବନ ତମାମ
ବରିନେଲ କାରାଦଣ୍ଡ ଅଶେଷ ଦମନ
ଗୃହତେଜି ରଚିଲ ଆଶ୍ରମ
ହେ ପ୍ରିୟତମ...... ।୨।

ପିତା, ମାତା, ଭାଇବନ୍ଧୁ ତେଜିଲ କୁଟୁମ୍ବ
ନିସ୍ୱାର୍ଥ ଜନସେବାକୁ ମଣିଲ ଧରମ
ଦରିଦ୍ର ଜନତା ହେଲେ ଅତି ପ୍ରିୟ ତୁମ
ହେ ପ୍ରିୟତମ...... ।୩।

ଭାରତମାତାର ହସ୍ତୁ ଫିଟିଲ ବନ୍ଧନ
ବିଦେଶୀ କବଳୁ ଦେଶ ହୋଇଲ ସ୍ୱାଧୀନ
ସେ ସଂଗ୍ରାମେ ଆଉ ଏକ ଦଧୀଚି ସମ
ହେ ପ୍ରିୟତମ...... ।୪।

ଶୋଷଣ, କଷଣ ଦୁଃଖ ହୋଇ ନାହିଁ ଶେଷ
ଜନଶତ୍ରୁ ନାନାରୂପେ ବଢ଼ାଅନ୍ତି ବଂଶ
ନେଲ କେଉଁଠାରେ ଚିର ବିଶ୍ରାମ
ହେ ପ୍ରିୟତମ...... ।୫।

—ସ୍ୱାଧୀନତା ସଂଗ୍ରାମୀବୃନ୍ଦ

# ମୋ ଦୃଷ୍ଟିରେ ଗତିବାବୁ

**● ସୁରେନ୍ଦ୍ର ନାଥ ନାୟକ**

ଗତିବାବୁ କାକଟପୁରବାସୀଙ୍କର ମୁକୁଟ ଥିଲେ । ଗତିବାବୁ କିଶୋର ବୟସରୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ପ୍ରତ୍ୟେକ ଉତ୍ସଗୁଡ଼ିକ ସଂଗ୍ରାମମୟ ଥିଲା । ସେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ଅବିସ୍ମରଣୀୟ ଭାବେ ଝାସ ଦେଇ ସ୍ୱାଧୀନତା ପରେ ଲୋକଶକ୍ତି ସଂଗ୍ରହ, ଗ୍ରାମକମିଟି ଗଠନ, କୃଷକ ସଂଗଠନମାନ ଗଠନ କରି ଲୋକଙ୍କ ଆଖିରେ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଭାବରେ ଆଦରଣୀୟ ହୋଇଥିଲେ । ଦେଶର ସ୍ୱାଧୀନତା ସଂଗ୍ରାମକୁ କାକଟପୁରବାସୀଙ୍କ ନିକଟରେ ପହଞ୍ଚାଇବାରେ ଶ୍ରୀ ଗତିକୃଷ୍ଣ ସ୍ୱାଇଁ, ଶ୍ରୀ ମଧୁସୂଦନ ମିଶ୍ର, ଶ୍ରୀ ପୂର୍ଣ୍ଣାନନ୍ଦ ସ୍ୱାଇଁଙ୍କର ଅତୁଳନୀୟ ଭୂମିକା ଥିଲା । ଏହି ନେତାମାନଙ୍କୁ ସାଧାରଣ ଲୋକେ ଏପରି ବିଶ୍ୱାସ କରୁଥିଲେ ଯେ ସ୍ୱାଧୀନତା ଆନ୍ଦୋଳନ ବ୍ୟକ୍ତିଗତ ସଙ୍କଳ୍ପରେ ପରିଣତ ହେଲା । ଦେଶର ଯେକୌଣସି କୋଣରେ ସଂଗ୍ରାମ ଧ୍ୱନି କାକଟପୁରରେ ପ୍ରତିଧ୍ୱନିତ ହେଉଥିଲା । ଏହି ପ୍ରତିଧ୍ୱନି ଲବଣ ସତ୍ୟାଗ୍ରହ ଆନ୍ଦୋଳନବେଳେ କୁହୁଡ଼ିଠାରେ ସତ୍ୟାଗ୍ରହୀ ଓ ମହିଳାମାନଙ୍କ ଭୂମିକା ଏକ ଐତିହାସିକ ଘଟଣା ଘଟାଇଥିଲା । ଏହି ତିନିଜଣଙ୍କ ସଂଗ୍ରାମାତ୍ମକ ଆଚରଣ ତାଙ୍କ ପରିବାରର ଦୁର୍ଦ୍ଦଶାର କାରଣ ହୋଇଥିଲା । କିନ୍ତୁ ସେମାନେ କେବେ ବିଚଳିତ ହେଉନଥିଲେ । ପରବର୍ତ୍ତୀ ସମୟରେ ଗତିବାବୁ କଂଗ୍ରେସ ଦଳ ତ୍ୟାଗକରି ମାର୍କସଙ୍କ ଦର୍ଶନରେ ଅନୁପ୍ରାଣିତ ହୋଇ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଇ କଠୋର ସମସ୍ୟାର ସମ୍ମୁଖୀନ ହୋଇଥିଲେ । ଜନସାଧାରଣଙ୍କ ଆଖିରେ ଗତିବାବୁ ଦଳୀୟ ବ୍ୟକ୍ତି ନଥିଲେ । ତାଙ୍କ ବ୍ୟକ୍ତିତ୍ୱ ଅତୁଳନୀୟ ଥିଲା । ଏକ ସମୟରେ କମ୍ୟୁନିଷ୍ଟ ପାର୍ଟି ଓ କଂଗ୍ରେସ ମଧ୍ୟରେ ତୀବ୍ର ମତଭେଦ ଥିଲା କିନ୍ତୁ ଗତିବାବୁ ଦଳମତ ନିର୍ବିଶେଷରେ ସମସ୍ତଙ୍କର ନମସ୍ୟ ଥିଲେ । ସେ ଆଉ ଆମ ସାଥୀରେ ନାହାନ୍ତି । ଏକବର୍ଷ ପୂରିବାକୁ ଯାଉଛି । କିନ୍ତୁ ତାଙ୍କ ଅମ୍ଳାନ ମୁଖମଣ୍ଡଳ ମୋର ଆଖି ଆଗରେ ନାଚି ଯାଉଛି । ସେ ନାହାନ୍ତି ବିଶ୍ୱାସ ହେଉନି । ଗତିବାବୁଙ୍କ ନିଷ୍ଠା, ବିଶ୍ୱାସ, ଚରିତ୍ର ଆମମାନଙ୍କର ଜୀବନଯାତ୍ରାର ପାଥେୟ ହେଉ । ତାଙ୍କର ପବିତ୍ର ଆତ୍ମା ଶାନ୍ତିରେ ବିଶ୍ରାମ ନେଉ । ମୋର ଈଶ୍ୱରଙ୍କଠାରେ ପ୍ରାର୍ଥନା ।

# ଶ୍ରଦ୍ଧାଞ୍ଜଳି

**● ଜାନକୀବଲ୍ଲଭ ପଟ୍ଟନାୟକ**

୧୯୯୩, ଏପ୍ରିଲ ୨୫ ତାରିଖ ଅକ୍ଷୟ ତୃତୀୟା ଦିନ ଶ୍ରୀ ଗତିକୃଷ୍ଣ ସ୍ୱାଇଁଙ୍କ ବିୟୋଗରେ ଓଡ଼ିଶା ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଜନସେବୀ ଓ ବିଧାୟକଙ୍କୁ ହରାଇଲା । ସେ ତାଙ୍କ ଦୀର୍ଘ ଜୀବନକାଳ ମଧ୍ୟରେ ଓଡ଼ିଶାର ଚାଷୀମାନଙ୍କର ସ୍ୱାର୍ଥରକ୍ଷା ପାଇଁ ସଂଗ୍ରାମ କରିଛନ୍ତି । ଭାଗଚାଷୀ ଓ କୃଷିମୂଲିଆମାନେ ତାଙ୍କର ଆନ୍ଦୋଳନ ଜରିଆରେ ବହୁ ଭାବରେ ଉପକୃତ ହୋଇଛନ୍ତି । ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେଇ ଅସ୍ତରଙ୍ଗ ଉପକୂଳରେ ଲୁଣ ମାରି ଜେଲ୍ ଯାଇଥିଲେ ।

ରାଜ୍ୟ କମ୍ୟୁନିଷ୍ଟ ଦଳର ସେ ଜଣେ ବିଶିଷ୍ଟ ନେତା ଥିଲେ । ତାଙ୍କର ସଂଗ୍ରାମୀ, ତ୍ୟାଗପୂତ ଜୀବନ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଏକ ପ୍ରେରଣାର ଉତ୍ସ ହୋଇ ରହିବ ।

——

# ମଣିଷ ଭଳି ମଣିଷଟିଏ

● ଗୁରୁଚରଣ ପଟ୍ଟନାୟକ

ଗତିବାବୁଙ୍କ ଚିତାର ବର୍ଷେ ହୋଇଗଲା । ତାଙ୍କର ବିୟୋଗଜନିତ ଦୁଃଖ ମଣିଷ ଧୀରେ ଧୀରେ ଭୁଲିଯିବ । କିନ୍ତୁ ତାର ଅଜ୍ଞାତରେ ଧୀରେ ଧୀରେ ଫୁଟିଉଠିବ ସେହି ପାଶୋରା ଜୀବନର ଅମ୍ଳାନ ମହତ୍ତ୍ୱ—ଯାହାକୁ ଫୁଟେଇବାରେ କେବଳ ମଣିଷ ନିଜର ଜୀବନକୁ ପ୍ରସ୍ତୁତ କରିପାରେ ।

ଗତିବାବୁଙ୍କ ଜୀବନ ଏପରି ଏକ ଲକ୍ଷ୍ୟ, ଆଦର୍ଶ ଓ କାର୍ଯ୍ୟାବଳୀରେ ମୂର୍ତ୍ତିମନ୍ତ, ଯାହାକି ପ୍ରତ୍ୟେକ ସଚ୍ଚୋଟ ଦେଶପ୍ରେମୀ ଆଗରେ ସଦା ଏକ ନୈଷ୍କାମ୍ୟ ନିଦର୍ଶନ ହେବ । ସେହି ଜୀବନ ପ୍ରତ୍ୟେକ କମ୍ୟୁନିଷ୍ଟ ଆଗରେ ନିଜର ମତ ଓ ପାର୍ଟିପ୍ରତି ଅନୁରକ୍ତିର ଏକ ଅବିଶ୍ରାନ୍ତ ଆହ୍ୱାନ ଭାବେ ଦେଖାଦେବ । ତାହା ମଧ୍ୟ ପ୍ରତ୍ୟେକ ମାନବ ପ୍ରେମୀଙ୍କ ଆଗରେ ସେହି ପ୍ରେରଣା ଓ କର୍ତ୍ତବ୍ୟବୋଧର ଏକ ନିରବଚ୍ଛିନ୍ନ ଉତ୍ସ ରୂପେ ପ୍ରବାହିତ ହେବ । ଶେଷରେ ତାଙ୍କ ଜୀବନର ସେହି ଐତିହ୍ୟ ଇତିହାସ ବକ୍ଷରେ ପ୍ରସ୍ତରର ଏକ ନିର୍ମଳ ସୋପାନର ଭିତ୍ତି ରଚନା କରେ ।

ଏହିପରି ଏକ ଜୀବନର ବିଷୟ ଲେଖିବାକୁ ଯାଇ ମୁଁ ବଡ଼ ଦୋପାଇରେ ପଡ଼ିଛି । ଯାହା ଚାହୁଁଛି, ନାହିଁ ତାହା ଲେଖିପାରୁଛି ନା ଛାଡ଼ିପାରୁଛି । ୧୯୩୦ରୁ ୧୯୯୩—ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ଦୀର୍ଘ ଷାଠିଏ ବର୍ଷରୁ ଊର୍ଦ୍ଧ୍ୱକାଳ ପର୍ଯ୍ୟନ୍ତ ତାଙ୍କ ସହିତ ସମ୍ପର୍କ । ସାଧାରଣ ସେବାକାର୍ଯ୍ୟରୁ ସଂଗ୍ରାମ କ୍ଷେତ୍ରଯାଏ, କଂଗ୍ରେସରୁ କମ୍ୟୁନିଷ୍ଟ ଜୀବନପର୍ଯ୍ୟନ୍ତ--ପଦେ କଥାରେ କହିଲେ, ବ୍ରିଟିଶ କବଳରୁ ଦେଶକୁ ସ୍ୱାଧୀନ କରିବାଠାରୁ ସମସ୍ତ ଶୋଷଣର ବିଲୋପ କରି ସମାଜବାଦ ଲକ୍ଷ୍ୟରେ ଅଗ୍ରସର ହେବାଯାଏ ଆମର ସେଇ ସମ୍ପର୍କର ପ୍ରସାର ।

ଆମର ସେଇ ସମ୍ପର୍କ ଲକ୍ଷ୍ୟ ଦିଗରୁ ଯେତେ ଦୁଃସାଧ୍ୟ ଓ ସୁଦୂର ହେଲେ ମଧ୍ୟ ଆଦର୍ଶ ଦୃଷ୍ଟିରୁ ତାହା ଯେତେ ବିରାଟ କଳ୍ପନାକୁ ଆଶ୍ରା କଲେ ବି ଦୈନନ୍ଦିନ କାର୍ଯ୍ୟ ମଧ୍ୟରେ ତାର ସେଇ ବାସ୍ତବତାର ବିସ୍ତାର । ତାହା ପୁଣି ଏତେଦୂର ନିବିଡ଼ ଯେ ଦିନେ ହେଲେ ମୁହୂର୍ତ୍ତକ ପାଇଁ ସେଇ ସମ୍ପର୍କରେ ବ୍ୟତିକ୍ରମ ଘଟିନାହିଁ କି ବିରତି ଆସିନାହିଁ । ତେଣୁ ସମଗ୍ର ଭାବେ ଗତିବାବୁଙ୍କୁ ଜାଣିବା, ତାଙ୍କୁ ଅତି ନିକଟରୁ ବୁଝିବା, କେତେଜଣଙ୍କ ମଧ୍ୟରେ ମୁଁ ମୋର ଅପ୍ରତିଦ୍ୱନ୍ଦ୍ୱୀ ଅଧିକାର ଦାବୀକରିବା ସ୍ୱାଭାବିକ ।

୧୯୩୦-୩୧ରେ ପୁରୀରେ ସ୍ୱାଧୀନତା ଆନ୍ଦୋଳନ ଭିତରେ ଆମେ ଯେଉଁ କେତେଜଣ—ପ୍ରାଣନାଥ ପଟ୍ଟନାୟକ, ଗତିକୃଷ୍ଣ ସ୍ୱାଇଁ, ଗୋକୁଳ ମୋହନ ରାୟ ଚୂଡ଼ାମଣି, ଗଙ୍ଗାଧର ମିଶ୍ର ଓ ଲେଖକ ମଧ୍ୟରେ ଯେଉଁ ବନ୍ଧୁତ୍ୱର ଭାବ ଗଢ଼ି ଉଠିଥିଲା ତାହା ଶେଷଯାଏ କେବଳ ଅକ୍ଷୁର୍ଣ୍ଣ ରହିନାହିଁ, ଅଧିକ ସଂଘବଦ୍ଧ ଓ ଶକ୍ତିଶାଳୀ ହୋଇଉଠିଛି ।

ସେହି ସମୟରେ ପାଟନା କ୍ୟାମ୍ପ ଜେଲ୍‌ରେ ଆମ୍ଭେମାନେ ଦେଶସେବା ଓ ସ୍ୱାଧୀନତା ସଂଗ୍ରାମ ଲାଗି ଏକ ଗୋଷ୍ଠୀ ଗଢ଼ିବାରେ ସ୍ୱପ୍ନ ଦେଖିଥିଲୁ । ସେହି ଦିଗରେ ପଦକ୍ଷେପ ପରବର୍ତ୍ତୀ କାଳରେ ଆମକୁ ଆଣି କୃଷକ ଆନ୍ଦୋଳନ, କଂଗ୍ରେସ ସାମ୍ୟବାଦୀ ଦଳ ଓ ଶେଷରେ କମ୍ୟୁନିଷ୍ଟ ପାର୍ଟିରେ ପହଞ୍ଚାଇ ଦେଇଛି । ସେମାନଙ୍କ ମଧ୍ୟରୁ ଦୁଇଜଣ ଗଲେଣି, ଆଉ ଦୁଇଜଣ ଜରାଗ୍ରସ୍ତ, ଅକ୍ଷମ । ସେଦିନର ସ୍ମୃତି ଧୀରେ ଧୀରେ ଲିଭି ଲିଭି ଯାଉଛି । କିନ୍ତୁ ତାହାହିଁ ହେଉଛି ଭିତ୍ତି, ଯାହା ଉପରେ ଗଢ଼ିଉଠିଛି ଗତିବାବୁଙ୍କ ପରବର୍ତ୍ତୀ ଜୀବନ ।

ଅତଏବ, ଯୁଗର କ୍ରମାଗତ ଆହ୍ୱାନର ଉତ୍ତରରେ ଯେଉଁ ଜୀବନ ଆତ୍ମପ୍ରକାଶ କରିଛି ସେଇ ଜୀବନକୁ ବୁଝିବାକୁ ହେଲେ ସେଇ ଯୁଗର ମର୍ମ ଓ ଧର୍ମକୁ ନିରୀକ୍ଷଣ କରିବାକୁ ହେବ । ଏଠାରେ ସେଇ ବିଚାର ଅଭାବରେ ଗତିବାବୁଙ୍କ ପ୍ରତି ଯଥାର୍ଥ ନ୍ୟାୟ କରିବା ଦିଗରେ ମୁଁ ନିଜେ ସନ୍ଦିହାନ ।

ଗତିବାବୁଙ୍କୁ କିଏ ଗାନ୍ଧିବାଦୀ କିଏ ବା ଖାଣ୍ଟି କମ୍ୟୁନିଷ୍ଟ, କିଏ ବା ଜଣେ ସଚ୍ଚୋଟ ଦେଶପ୍ରେମୀ—ଏମିତି କିଏ କେତେଆଡୁ ବିଚାର କରିପାରେ । ସେସବୁ ଗୁଣ ଅନ୍ୟମାନଙ୍କ ପାଖରେ ମଧ୍ୟ ଅଳ୍ପ ବହୁତ ମାତ୍ରାରେ ରହିଛି । ପ୍ରଶ୍ନ ହେଉଛି ଗତିବାବୁଙ୍କର ଖାସ୍ ଓ ସ୍ୱତନ୍ତ୍ର ଗୁଣ କ'ଣ ? ଯାହାକି ତାଙ୍କୁ ଗତିବାବୁ କରି ଥୋଇଛି । କ'ଣ ତାଙ୍କର ସେଇ ନିଜସ୍ୱ ଗୁଣ, ଯାହାକୁ ବାଦ୍ ଦେଲେ ସେ ଆଉ ଗତିବାବୁ ହୋଇ ରହିବେ ନାହିଁ । ମୋ ମତରେ ମୁଖ୍ୟତଃ ଗତିବାବୁ ହେଲେ ଜଣେ ମଣିଷ ଭଳି ମଣିଷ ।

( ୪୭ ପୃଷ୍ଠା ଦେଖନ୍ତୁ )

# ଗତିବାବୁଙ୍କ ପାଇଁ

● ଲୋକନାଥ ଚୌଧୁରୀ

ଦେଖୁଁ ଦେଖୁଁ ବର୍ଷେ ବିତିଗଲା ଗତିବାବୁ ଆମକୁ ଛାଡ଼ି ଚାଲିଗଲେ । ଗତିବାବୁଙ୍କର ଗଲାପରେ ବ୍ୟକ୍ତିଗତ ସ୍ତରରେ ମୁଁ ନିଜକୁ ଅତ୍ୟନ୍ତ ଅସହାୟ ମନେକରୁଛି । ସାଥୀ ସୋମନାଥ ମୋତେ ବାରମ୍ବାର ଗତିବାବୁଙ୍କ ସ୍ମରଣିକାକୁ ଲେଖାଟିଏ ଦେବାପାଇଁ ଅନୁରୋଧ କରିଛନ୍ତି । ବସି ଭାବୁଛି କ'ଣ ଲେଖିବି ? ଗତିବାବୁଙ୍କ ବିଷୟ ଲେଖିବାକୁ ମୋର ଯୋଗ୍ୟତା ନାହିଁ । ଗତିବାବୁ ଖାଲି ଆମ ପାର୍ଟିର ଆଦିପୁରୁଷ ଓ ନେତା ତାହା ନୁହେଁ, ସେ ଥିଲେ ମଣିଷ ପରିକା ମଣିଷ । ମୋ ବିଚାରରେ ସେ ଏକ ଅସାଧାରଣ ବ୍ୟକ୍ତି । ମୋର ପାର୍ଟି ଜୀବନର ପଚିଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଭିତରେ ମୁଁ ଯେତେ ପାର୍ଟି ନେତା ଓ କର୍ମୀଙ୍କ ସମ୍ପର୍କରେ ଆସିଛି ତାଙ୍କ ଭିତରେ ଏକ ସ୍ୱତନ୍ତ୍ରତା ଅନୁଭବ କରିଛି । କେବଳ କଥାରେ ନୁହେଁ ଆଚରଣରେ, ବ୍ୟବହାରରେ ସାଥୀମାନଙ୍କ ପ୍ରତି ସ୍ନେହ ମମତା ତାହା ଅନ୍ୟ କୌଣସି ପାର୍ଟିନେତା ବା କର୍ମୀଙ୍କ ଭିତରେ ଥିବା ଅନୁଭବ କରିନାହିଁ । ଆଜି ପାର୍ଟି ଭିତରେ ସବୁଠାରେ ତଳୁ-ଉପର ପର୍ଯ୍ୟନ୍ତ କଥା ଏବଂ କାମରେ ଯେଉଁ ବ୍ୟବଧାନ ଦେଖାଦେଉଛି ଯାହା ସମସ୍ତଙ୍କୁ ଗ୍ରାସ କରୁଛି, ସେ କ୍ଷେତ୍ରରେ ଗତିବାବୁ ଥିଲେ ଭିନ୍ନ । ସେ ଯାହା କହୁଥିଲେ ବା କରୁଥିଲେ ତାହା କେବେ ଲୋକଦେଖାଣିଆ ନଥିଲା ।

ଗାନ୍ଧୀଯୁଗରେ ଗ୍ରାମ୍ୟ ସ୍ୱରାଜ ଗଠନ କରିବାର କଳ୍ପନାକୁ ସେ ବାସ୍ତବ ରୂପ ଦେଇଥିଲେ । ମୃତ୍ୟୁର ଶେଷପର୍ଯ୍ୟନ୍ତ ପାଟପୁର ଗ୍ରାମ କମିଟିକୁ ସେ ଯେଉଁ ନେତୃତ୍ୱ ଦେଇଆସିଥିଲେ ଓ ନିଜେ ଜଡ଼ିତ ରହି ସବୁ କାମ ପରିଚାଳିତ କରୁଥିଲେ ତାହାର ଦୃଷ୍ଟାନ୍ତ ଓଡ଼ିଶାର ଅନ୍ୟତ୍ର ନାହିଁ ।

ଗ୍ରାମ୍ୟଜୀବନରେ ଯେଉଁ ସମସ୍ତ ହିଂସା, ଦ୍ୱନ୍ଦ୍ୱ, ଇର୍ଷା ଗ୍ରାମ୍ୟଜୀବନକୁ ପ୍ରଭାବିତ କରିଥାଏ ସେ ସମସ୍ତ ସହିତ ସମନ୍ୱୟ ରକ୍ଷାକରି ଯେପରି ଏହି କମିଟିକୁ ପରିଚାଳନା କରିଗଲେ ତାହା ଓଡ଼ିଶା ଇତିହାସରେ ଏକ ସ୍ୱତନ୍ତ୍ର ନିଦର୍ଶନ ।

କେବଳ କଥାରେ ନୁହେଁ କି ଭାଷଣରେ ନୁହେଁ ତାଙ୍କର ବ୍ୟବହାର, ତାଙ୍କର ଚଳଣି ଏହିପରି ଏକ ଆଦର୍ଶ ଗ୍ରାମ ଗଠନ କରିବା ପାଇଁ ମୁଖ୍ୟ ଉପାଦାନ । ସାଥୀମାନଙ୍କ ପ୍ରତି ତାଙ୍କର ବ୍ୟବହାର, ସମସ୍ତ ବିଷୟରେ ତାଙ୍କର ସ୍ପଷ୍ଟ ମତ, ସମସ୍ତ ପ୍ରକାର ସ୍ୱାର୍ଥଜଡ଼ିତ କାର୍ଯ୍ୟ ପ୍ରତି ତାଙ୍କର ଘୃଣା, ପ୍ରତ୍ୟେକ ମଣିଷର ଧ୍ୟେୟହେବା ଉଚିତ । ବିଶେଷ କରି ମୋ ଜୀବନରେ ବହୁ ସଙ୍କଟ ସମୟରେ ତାଙ୍କର ସହାନୁଭୂତି ମତେ ସାହସ ଏବଂ ଦମ୍ଭ ଦେଇ ଆସିଥିଲେ । ପ୍ରତ୍ୟେକ କାର୍ଯ୍ୟକୁ ଠିକ୍‌ଭାବେ ପ୍ରସ୍ତୁତ କରିବା ତାଙ୍କର ଏକ ସ୍ୱତନ୍ତ୍ରତା ଯାହା ଅନ୍ୟ କୌଣସି ସାଥୀଙ୍କ ପାଖରେ ଥିବା ମୁଁ ଦେଖିନି ।

ସାଥୀମାନଙ୍କ ପ୍ରତି ସହାନୁଭୂତି, ମମତା ତାଙ୍କର କଥାରେ ନୁହେଁ, କାର୍ଯ୍ୟରେ ସେ ଦେଖାଉଥିଲେ ।

ଆଜି ଯେଉଁ ଗଣସଙ୍ଗଠନ କଥା ଉଠୁଛି ଓ ସାମାଜିକ ପରିବର୍ତ୍ତନ ପାଇଁ ଗଣ ସଙ୍ଗଠନ ଯେ ଅପରିହାର୍ଯ୍ୟ ତାହା ଆମ ପାର୍ଟି କରିବ ଯଦି ଗତିବାବୁଙ୍କ କାର୍ଯ୍ୟ, ଶୈଳୀ ଏବଂ ସ୍ୱାର୍ଥତ୍ୟାଗକୁ ଆମେ ନିଜର କରିପାରିବା ।

ଗତିବାବୁ କଥାରେ ନୁହେଁ କାର୍ଯ୍ୟରେ, ବ୍ୟବହାରରେ ଧ୍ରୁବତାରା ଭଳି ମୁଁ ଅନୁଭବ କରୁଛି । ଗତିବାବୁଙ୍କ ପରି ଜଣେ ମଣିଷ ହୋଇପାରିଲେ ଯାହା ତାଙ୍କର ମୁଖ୍ୟ ଗୁଣଥିଲା, ଜଣେ ପ୍ରକୃତ ବିପ୍ଳବୀ ହୋଇପାରିବ ବୋଲି ମୁଁ ବିଚାର କରେ । ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ସେ ସାରା ଜୀବନ ଅନୁସରଣ କରିଥିବା କାର୍ଯ୍ୟପଦ୍ଧତିକୁ ଅନୁସରଣ କଲେ ଆମେ ଓଡ଼ିଶାରେ ଏକ ସାମାଜିକ, ଅର୍ଥନୈତିକ ପରିବର୍ତ୍ତନ ଆଣିବାକୁ ସକ୍ଷମ ହେବା । ଆଜି ତାଙ୍କ ଶ୍ରାଦ୍ଧବାର୍ଷିକୀରେ ଅପୂରଣୀୟ ଲକ୍ଷ୍ୟକୁ ପୂରଣ କରିବାପାଇଁ ତାଙ୍କ କାର୍ଯ୍ୟପଦ୍ଧତିକୁ ଗ୍ରହଣ କରିବାପାଇଁ ସଙ୍କଳ୍ପ ନେଲେ ତାଙ୍କ ପ୍ରତି ଉପଯୁକ୍ତ ସମ୍ମାନ ହେବ ।

●

# ମୋ ଗୁରୁ ସର୍ଦ୍ଦାର ଗତିକୃଷ୍ଣ

● ସୋମନାଥ ପାତ୍ର

ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସାମ୍ୟବାଦ ଚିନ୍ତାଧାରାର ବାହକ ଓ କୃଷକ ଆନ୍ଦୋଳନର ନେତା ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଆଜକୁ ଠିକ୍ ବର୍ଷେ ତଳେ ୧୯୯୩ ଅପ୍ରେଲ ୨୫ ତାରିଖ ଓ ପବିତ୍ର ଅକ୍ଷୟ ତୃତୀୟା ଦିନ ୮୭ ବର୍ଷ ବୟସରେ କର୍ମମୟ ସଂସାରରୁ ଚିରଦିନ ପାଇଁ ବିଦାୟ ନେଇ ଚାଲି ଯାଇଛନ୍ତି । ଅନେକେ ଯାଇଛନ୍ତି ସେ ମଧ୍ୟ ଗଲେ । ମୃତ୍ୟୁହିଁ ସମସ୍ତଙ୍କ ପକ୍ଷରେ ସତ୍ୟ ।

"କେହି ଚିରକାଳ ରହିବେ ନାହିଁଟି ଭବ ରଙ୍ଗ ଭୂମି ତଳେ,
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।।"

ସମସ୍ତଙ୍କ ମୃତ୍ୟୁ ନିଶ୍ଚିତ । କିନ୍ତୁ ବିଶେଷତ୍ୱ ହେଉଛି ନିଜର ଜୀବନକାଳ ମଧ୍ୟରେ ସମାଜକୁ କିଏ କ'ଣ ଦେଇ-ଗଲେ ? ବ୍ୟକ୍ତିକୁ ନେଇ ସମାଜ । ବ୍ୟକ୍ତିର କାର୍ଯ୍ୟକୁ ନେଇ ସମାଜକୁ ବିଚାର କରାଯାଏ ଓ ସମାଜ ମଧ୍ୟରେ ପ୍ରତ୍ୟେକ ବ୍ୟକ୍ତିକୁ ବିଚାର କରାଯାଏ । ତେଣୁ ବ୍ୟକ୍ତି ଓ ସମାଜକୁ ନେଇ ଇତିହାସ ଗଠିତ ହୁଏ । ଇତିହାସ ହେଉଛି ମନୁଷ୍ୟ ଜୀବନ ଧାରାର ଏକ ପ୍ରବାହ । ସେହି ପ୍ରବାହ ମଧ୍ୟରେ ବହୁ ବ୍ୟକ୍ତି ବିଭିନ୍ନ ଗୋଷ୍ଠି, ବିଭିନ୍ନ ସମାଜ, ବିଭିନ୍ନ ଧର୍ମ, ଆଦର୍ଶ, ଦର୍ଶନ, ଅଙ୍କିତ ଚିତ୍ରର ସ୍ଥାନ ପାଇ ଆସିଅଛି । ତେଣୁ ଗତିବାବୁଙ୍କ କାର୍ଯ୍ୟାବଳୀ ଇତିହାସ ପାଇଁ କିଛି ଅବଦାନ ଦେଇଯାଇଛି । ସେହି କାରଣରୁ ସେ ଜଣେ ଐତିହାସିକ ପୁରୁଷ । ଗତିବାବୁଙ୍କୁ ବିଚାର କରିବାକୁ ହେଲେ ଭାରତ ବର୍ଷର ଜାତିମୁକ୍ତି ସଂଗ୍ରାମ, ସାମ୍ରାଜ୍ୟବାଦ ଓ ସାମନ୍ତବାଦ ବିରୋଧୀ ସଂଗ୍ରାମକୁ ବିଚାର କରିବାକୁ ହେବ । ତାହାରି ମଧ୍ୟରେ ଗତିବାବୁଙ୍କୁ ଖୋଜିବାକୁ ହେବ । ତାକୁ ବାଦ ଦେଇ ଗତିବାବୁଙ୍କୁ ବିଚାର କରିହେବ ନାହିଁ ।

ସାମ୍ରାଜ୍ୟବାଦ ଓ ସାମନ୍ତବାଦ ବିରୋଧୀ ଆନ୍ଦୋଳନ ମଧ୍ୟରେ ଗତିକୃଷ୍ଣ ସ୍ୱାଇଁ ସର୍ଦ୍ଦାର ଗତିକୃଷ୍ଣ ଉପାଧିରେ ଭୂଷିତ ହୋଇଥିଲେ । ବାସ୍ତବରେ ସେ ଜଣେ ସର୍ଦ୍ଦାର ଭଳି କାର୍ଯ୍ୟ କରୁଥିଲେ । କର୍ମ କ୍ଷେତ୍ରରେ ତାଙ୍କର ନିଷ୍ଠା, ଶୃଙ୍ଖଳା ଓ ବଳିଷ୍ଠ ନେତୃତ୍ୱ ହିଁ ତାହା ପ୍ରମାଣିତ କରୁଥିଲା । ସେ କେବଳ ସର୍ଦ୍ଦାର ନଥିଲେ ସେ ଥିଲେ ରାଜନୈତିକ ଗୁରୁ ।

ଛାତ୍ର ଜୀବନରୁ ସେ ସମାଜ ସେବା ଓ ଦେଶସେବା ପାଇଁ ମନ ବଳାଇ ଉଚ୍ଚତର ଅଧ୍ୟୟନ ତ୍ୟାଗ କରି ଜାତୀୟ ମୁକ୍ତି ସଂଗ୍ରାମରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ବଚନ ଓ କର୍ମ ମଧ୍ୟରେ ମେଳ ରଖି ସେ ଚାଲୁଥିଲେ । ଯାହା କହୁଥିଲେ ତାହାହିଁ କରୁଥିଲେ । କୌଣସି ଛଳନା, କୃତ୍ରିମତା ତାଙ୍କଠାରେ ଦେଖିବାକୁ ମିଳୁ ନଥିଲା ।

ମହାତ୍ମାଗାନ୍ଧୀ, ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ସେ ନିଜକୁ ସେହିପରି ଗଢ଼ିବା ପାଇଁ ସର୍ବଦା ପ୍ରୟାସୀ ଥିଲେ । ଜୀବନ ସାରା ସେ ତ୍ୟାଗର ଏକ ପ୍ରତିଯୋଗିତା ଚଳାଇ ଚାଲିଥିଲେ । ସାଂସାରିକ ଜୀବନଠାରୁ ବିଚ୍ଛିନ୍ନ ହୋଇ ଏକ ବୈରାଗୀର ଜୀବନ ନେଇ ସେ ଚାଲୁଥିଲେ । କର୍ମମୟ ଜୀବନ ମଧ୍ୟରେ ନିଜର ବାପା, ଧର୍ମପତ୍ନୀ, ଦୁଇଭାଇ, ଗୋଟିଏ ପୁଅର ମୃତ୍ୟୁ ହୋଇ ଯାଇଥିଲେ ମଧ୍ୟ ସେ ଭାଙ୍ଗି ନପଡ଼ି କର୍ତ୍ତବ୍ୟ ପଥରେ ଦୃଢ଼ ରହି ଆଗେଇ ଚାଲିଥିଲେ । ଦୁଃଖ, ନିର୍ଯ୍ୟାତନା, ଦାରିଦ୍ର୍ୟ ସରକାରୀ ଦଣ୍ଡକୁ ସେ ଖାତିର ନକରି ଜଣେ ସ୍ଥିତପ୍ରଜ୍ଞ ବ୍ୟକ୍ତିଭାବେ ସବୁକୁ ସହିନେଇ ନିଜର କର୍ତ୍ତବ୍ୟରେ ଦୃଢ଼ ରହୁଥିଲେ ।

ଶାସ୍ତ୍ରୀୟ ମତ ଅନୁଯାୟୀ ବିଚାର କଲେ ଜଣାଯାଏ ଯେ ସେ ଜଣେ କର୍ମଯୋଗୀ, ସ୍ଥିତପ୍ରଜ୍ଞ, ତ୍ୟାଗୀ, ପରୋପକାରୀ, ସତ୍ୟନିଷ୍ଠ, କର୍ତ୍ତବ୍ୟପରାୟଣ, ନିର୍ଭିକ, ଉତ୍ତମ ପୁରୁଷ ଥିଲେ । ଶତ୍ରୁ ମିତ୍ର ନିର୍ବିଶେଷରେ ସମସ୍ତ ଜନସାଧାରଣଙ୍କର ଥିଲେ ଅତ୍ୟନ୍ତ

ପ୍ରିୟ । ନଦୀ ସାଗର ସହିତ ମିଶି ଏକାକାର ହୋଇଗଲା ପରି ଗଡବାବୁ ଜନସାଧାରଣଙ୍କ ସହିତ ମିଶି ସେମାନଙ୍କ ସହିତ ଏକାକାର ହୋଇ ଯାଇଥିଲେ । ମନରେ ଗର୍ବ, ଅହଂକାର, ପଦମର୍ଯ୍ୟାଦାର କାମନା ନଥିଲା । ଏକମାତ୍ର ନିଃସ୍ୱାର୍ଥ ଜନସେବା ହିଁ ଥିଲା ତାଙ୍କ ଜୀବନର କାମନା । ମନୁଷ୍ୟଙ୍କ ଦେଖିବାକୁ ବାହାର କଲୁ ତାଙ୍କର ଚିନ୍ତା ଓ କାର୍ଯ୍ୟ ଥିଲା ଖୁବ୍ ଉଚ୍ଚକୋଟିର । ସରଳ ଜୀବନଯାପନ ଓ ଉଚ୍ଚ ଚିନ୍ତା ଥିଲା ତାଙ୍କ କର୍ମମୟ ଜୀବନର ବିଶେଷତ୍ୱ । ସେ ଗୃହ ଜୀବନରେ ଗୀତା ଅଧ୍ୟୟନ କରୁଥିଲେ, ଗୀତାର ମହତ୍ତ୍ୱକୁ ବୁଝି କର୍ତ୍ତବ୍ୟ କର୍ମକୁ ହିଁ ଈଶ୍ୱର ବୋଲି ମନେ କରୁଥିଲେ । କର୍ମକୁ ବାଦ ଦେଇ ଈଶ୍ୱରଙ୍କୁ ପ୍ରାର୍ଥନା କରିବାରେ ବିଶ୍ୱାସ କରୁନଥିଲେ । ସେଥିପାଇଁ କେତେକ ତାହାଙ୍କୁ ନାସ୍ତିକ ଭାବେ ଚିତ୍ରଣ କରୁଥିଲେ । କିନ୍ତୁ ସେ ସେଥିରେ ବିଚଳିତ ନହୋଇ ନିଜର ବିଶ୍ୱାସରେ ଶେଷ ଜୀବନ ପର୍ଯ୍ୟନ୍ତ ଦୃଢ଼ ରହିଥିଲେ । ସେ ତାଙ୍କର ଗୁରୁ ଗୋପବନ୍ଧୁ ଦାସଙ୍କ ଉକ୍ତିରୁ ଶିକ୍ଷା ଗ୍ରହଣ କରିଥିଲେ ଯେ—

"ମାନବ ଜୀବନ ନୁହଇ କେବଳ, ବର୍ଷ, ମାସ, ଦିନ ଦଣ୍ଡ ।
କର୍ମେ ଜୀଏ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ॥"

ଅନ୍ୟତମ ଗୁରୁ ଆଚାର୍ଯ୍ୟ ହରିହର ଦାସଙ୍କ ଆଶୀର୍ବାଦ "ଭଲ ମଣିଷ ହୁଅ" ତାଙ୍କ ପ୍ରତି ଥିଲା ବାସ୍ତବ ଆଶୀର୍ବାଦ । ସେହି ଆଶୀର୍ବାଦ ନେଇ ଗଡବାବୁ ଜଣେ ଭଲ ମଣିଷ ହୋଇ ପାରିଥିଲେ ।

"ଉତ୍ତମ ସଙ୍ଗେ ସଙ୍ଗ ଯାର, ସେ କରେ ଉତ୍ତମ ବେଭାର
ହୀନ ସଙ୍ଗତେ ହୀନ ମତି, ହସି କହନ୍ତି ଯଦୁପତି ॥"

ଗଡବାବୁ ୧୯୨୧ ମସିହାବେଳୁ ଉତ୍ତମ ବ୍ୟକ୍ତିମାନଙ୍କ ସଂସର୍ଗରେ ଆସିପାରି ଜଣେ ଉତ୍ତମ ମଣିଷ ହୋଇ ପାରିଥିଲେ । ଗାନ୍ଧୀ, ଗୋପବନ୍ଧୁ, ଆଚାର୍ଯ୍ୟ ପ୍ରଭୃତିଙ୍କ ସଂସ୍ପର୍ଶରେ ଆସି ଗଡବାବୁଙ୍କର ଗୁଣାତ୍ମକ ପରିବର୍ତ୍ତନ ଘଟିଥିଲା । ସେହି ଗୁଣାତ୍ମକ ପରିବର୍ତ୍ତନ ଯୋଗୁ ସେ ସମାଜରେ ଜଣେ ଆଦର୍ଶ ପୁରୁଷ ହୋଇ ପାରିଥିଲେ । ଇତିହାସରେ ସବୁଦିନ ପାଇଁ ତାଙ୍କ ନାମ ଲିପିବଦ୍ଧ ହୋଇରହିବ ।

ଗୀତାବର୍ଣ୍ଣିତ—"ସର୍ବେ ଭବନ୍ତୁ ସୁଖିନଃ" ମହାନ୍ ଭାବକୁ ସେ ହୃଦୟଙ୍ଗମ କରି ମାର୍କସଙ୍କ ସାମ୍ୟବାଦ ଚିନ୍ତାକୁ ମଣିଷ ସମାଜ ପାଇଁ ଉତ୍କୃଷ୍ଟ ତତ୍ତ୍ୱ ଭାବେ ଗ୍ରହଣ କରିନେଇ ଜୀବନର ଶେଷ ପର୍ଯ୍ୟନ୍ତ ସମାଜବାଦ ଓ ସାମ୍ୟବାଦର ପ୍ରଚାରକ ଥିଲେ । ସମାଜବାଦ ଓ ସାମ୍ୟବାଦ ବ୍ୟତୀତ କେବେ ମନୁଷ୍ୟ ସମାଜର ଶୋଷଣ କବଳରୁ ମୁକ୍ତି ନାହିଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ତେଣୁ ସମାଜବାଦକୁ ସେ ଧର୍ମ ଭାବେ ଗ୍ରହଣ କରି ନେଇଥିଲେ ।

"ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମୋ ଭୟାବହଃ ।" ବିଚାରରେ ସେ ଦୃଢ଼ ରହିଥିଲେ । କୌଣସି ଲୋଭ, ମୋହ, ମାୟା, ଭୟ ତାଙ୍କୁ ତାଙ୍କର ଆଦର୍ଶ ବା ସ୍ୱଧର୍ମ ପଥରୁ ହଟାଇ ଦେଇ ପାରିନଥିଲା ।

"ନିନ୍ଦନ୍ତୁ ନୀତି ନିପୁଣା ଯଦିବା ସ୍ତୁବନ୍ତୁ
ଲକ୍ଷ୍ମୀ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟ ।
ଅଦ୍ୟୈବ ବା ମରଣମସ୍ତୁ, ଶତାନ୍ତରେ ବା
ନ୍ୟାଯ୍ୟାତ୍‌ପଥଃ ପ୍ରବିଚଳନ୍ତି ପଦଂ ନ ଧୀରାଃ ॥"

ନିନ୍ଦା କରନ୍ତୁ ବା ପ୍ରଶଂସା କରନ୍ତୁ, ଲକ୍ଷ୍ମୀ ଆସନ୍ତୁ ବା ନ ଆସନ୍ତୁ, ଆଜି ମରଣ ହେଉ ବା ଶତବର୍ଷ ପରେ ମରଣ ହେଉ, ଯେଉଁମାନେ ଧୀର ଓ ମହତ୍ ବ୍ୟକ୍ତି ସେମାନେ ନ୍ୟାୟ ପଥରୁ କଦାପି ପାଦେହେଲେ ବି ବିଚଳିତ ହୁଅନ୍ତି ନାହିଁ ।

ଗଡବାବୁ ସାରା ଜୀବନ ବହୁ ଦୁଃଖ କଷ୍ଟରେ କଟାଇଛନ୍ତି । କିନ୍ତୁ କୌଣସି ଲୋଭ ତାଙ୍କୁ ତାଙ୍କ ପଥରୁ ଦୂରେଇ ନେଇ ପାରି ନଥିଲା । ବହୁ ଉଚ୍ଚପଦ ପଦବୀ ତାଙ୍କୁ ଯାଚି ଯାଇଛି କିନ୍ତୁ ସେ ତାହାଙ୍କୁ ଗ୍ରହଣ କରିନାହାନ୍ତି । ନିଜ ଧର୍ମରେ ରହି ମୃତ୍ୟୁ ବରଣ କରିଛନ୍ତି । "ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" ବାସ୍ତବିକ ତାଙ୍କର ମରଣଶଯ୍ୟାର

ଶୋଭାଯାତ୍ରାରେ ଅଗଣିତ ଶୋକାଭିଭୂତ ନରନାରୀ ଶ୍ମଶାନ ଭୂମି ପର୍ଯ୍ୟନ୍ତ ଗୋଡ଼ାଇ ଯାଉଥିବାର ଦୃଶ୍ୟ ତାଙ୍କ ଲୋକପ୍ରିୟତା ପ୍ରମାଣ କରେ । ସେହି ମହାପୁରୁଷ, କର୍ମଯୋଗୀ, ତ୍ୟାଗୀ, ପରୋପକାରୀ, ସ୍ୱାଧୀନତା ସଂଗ୍ରାମୀ, ସାମ୍ୟବାଦୀ କୃଷକ ନେତା ସର୍ଦ୍ଦାର ରାଜକୃଷ୍ଣ ସ୍ୱାଇଁ ଥିଲେ ମୋର ରାଜନୈତିକ ଗୁରୁ ଓ ଅଭିଭାବକ । ୧୯୩୭ ମସିହା ବେଳୁ ମୁଁ ତାଙ୍କ ସଂସ୍ପର୍ଶରେ ଆସିଛି ଓ ୧୯୪୭ରୁ ତାଙ୍କ ସହିତ ମିଶି ଦୀର୍ଘ ୪୭ ବର୍ଷ କାଳ ଏକତ୍ର କାର୍ଯ୍ୟ କରିବାର ସୁଯୋଗ ପାଇଛି । ତାଙ୍କ ସହିତ ଅଜ୍ଞାତବାସରେ ରହିଛି । ତାଙ୍କ ସହିତ ବନ୍ଦୀଶାଳାରେ ବି ରହିଛି । ଜୀବନର ପ୍ରତ୍ୟେକ ଅବସ୍ଥାକୁ ମୁଁ ଜାଣିବାର ସୁଯୋଗ ପାଇଛି । ତାଙ୍କ ଜୀବନର ପ୍ରତ୍ୟେକ ମୁହୂର୍ତ୍ତଟି ଥିଲା ମୋ ପାଇଁ ଅତ୍ୟନ୍ତ ମୂଲ୍ୟବାନ । ତାଙ୍କ କର୍ମମୟ ଜୀବନ ମୋ ନିକଟରେ ଥିଲା ଏକ ବିରାଟ ଗ୍ରନ୍ଥ । ସେହି ଗ୍ରନ୍ଥର ପ୍ରତ୍ୟେକଟି ପୃଷ୍ଠା ମୋ ପାଇଁ ଥିଲା ଶିକ୍ଷଣୀୟ ।

ତାଙ୍କର ଜୟନ୍ତୀ ପାଳନ ପାଇଁ ବହୁବାର ଉଦ୍ୟମ କରି ତାଙ୍କର ଦ୍ୱାରା ବାଧା ପାଇ ଶେଷରେ ନିବୃତ୍ତ ହୋଇଛି । ସେ କହୁଥିଲେ—"ମୋତେ ବସାଇ ମୋର ପ୍ରଶଂସା କରିବାର ଅର୍ଥ ମୋତେ ଅପମାନ ଦେବା ।"

ତାଙ୍କର ନିର୍ଦ୍ଦେଶ ଥିଲା—"ବ୍ୟକ୍ତିପୂଜା ପରିବର୍ତ୍ତେ ନୀତି ଓ ଆଦର୍ଶର ପୂଜା କର । ସଂଗଠନକୁ ଶକ୍ତିଶାଳୀ କର, ଲୋକଙ୍କ ପାଇଁ କାମକର । ଲୋକ ଦେଖାଣିଆ କିଛି କରନାହିଁ ।"

ଯାହାଙ୍କ ଗଳାରେ ଫୁଲମାଳଟିଏ ପିନ୍ଧାଇ ଦେଲେ ସେ ବିରକ୍ତ ହେଉଥିଲେ, ତାଙ୍କର ମରଶରୀର ଉପରେ କେତେ ଯେ ଲୋତକସିକ୍ତ ଫୁଲ ଅଜାଡ଼ି ହୋଇପଡ଼ିଲା ସେ ଦେଖିଲେ ନାହିଁ କି କିଛିମାତ୍ର ପ୍ରତିକ୍ରିୟା ପ୍ରକାଶ କଲେନାହିଁ । ମୃତ୍ୟୁର ଏକାଦଶାହ ଦିବସରେ ହଜାର ହଜାର ଲୋକ ପ୍ରତିଛବି ଉପରେ ଫୁଲମାଳ ପିନ୍ଧାଇ ଦେଇ କେତେ ଯେ ପ୍ରଶଂସା ଗାଇଗଲେ ତାହା ସେ ଶୁଣିଲେ ନାହିଁ ।

ସେହି ଆଦର୍ଶ ପୁରୁଷଟି ଥିଲେ ମୋର ରାଜନୈତିକ ଗୁରୁ ଓ ମୁଁ ଥିଲି ତାଙ୍କର ଶିଷ୍ୟ । ସେ ଥିଲେ କାୟା ମୁଁ ଥିଲି ତାଙ୍କର ଛାୟା । ସେ ନେତା ମୁଁ କର୍ମୀ । ସେ ସୂର୍ଯ୍ୟ ହେଲେ ମୁଁ ଥିଲି ତାଙ୍କର ତେଜ ନେଇ ମିଞ୍ଜି ମିଞ୍ଜି ହୋଇ ଦୃଶ୍ୟମାନ ହେଉଥିବା ତାରକାଭଳି । ସେ ଗଲାଦିନୁ ମୁଁ ଶକ୍ତିହୀନ, ତେଜହୀନ ଓ ନିର୍ବାକ ପାଲଟି ଯାଇଛି । ତଥାପି ତାଙ୍କର ଶିକ୍ଷା ମୋତେ ପ୍ରେରଣା ଦେଉଛି—"ସଂଗଠନକୁ ଶକ୍ତିଶାଳୀ କର, ଲୋକଙ୍କ ପାଇଁ କାମକର ।"

ଧନ୍ୟ ଚଢବାବୁ, ଧନ୍ୟ ତୁମର ଶିକ୍ଷା । ଧନ୍ୟ ତୁମର କର୍ମ । ତୁମେ ଅମର । ଇତିହାସ ତୁମକୁ ଭୁଲିପାରିବ ନାହିଁ । ଆଗାମୀ ବଂଶଧରଙ୍କ ପାଇଁ ତୁମେ ହିଁ ଆଦର୍ଶ ।

ପୂର୍ବଭଳି ତୁମର ସେହି ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦ କାମନା କରି ତୁମ ପ୍ରତି ମୋର କୃତଜ୍ଞତା ଜଣାଉଛି ।



କାକଟପୁର

# ଗତିକୃଷ୍ଣ ସ୍ୱାଇଁ—ଏକ ଉଲ୍‌କାପିଣ୍ଡ

● ଗୋକୁଳ ମୋହନ ରାୟ ଚୂଡ଼ାମଣି

ଇଂରେଜ ସରକାରଙ୍କର ରାଜୁତି । ବାଘ, ବଳଦିକୁ ଏକା ତୁଠରେ ପାଣି ପିଆଉଥିଲେ । ପୋଲିସର ନାଲି ପଗଡ଼ି ଦେଖିଲେ ଲୋକେ ଦୁଆର ଦେଇ ଘରେ ପଶୁଥିଲେ । ତା ସାଙ୍ଗକୁ ଇଂରେଜ ସରକାରଙ୍କର ବାହୁଛାୟା ତଳେ ଜମିଦାରମାନେତ ଜମିଦାର, ତାଙ୍କ ଗୁମାସ୍ତା ଓ ପିଆଦା ଜଣେ ଜଣେ ଯମଦୂତ । ମୋର ଦେଖିବାର କଥା । ଝାମୁଯାତ୍ରା ବେଳେ ହଜାର ହଜାର ଲୋକଙ୍କ ଉପସ୍ଥିତିରେ ଥାନା ସାମନାରେ ଜଣେ ପ୍ରଜାକୁ ନଡ଼ିଆ ଗଛରେ ବାନ୍ଧି ଜମିଦାରର ପିଆଦା ବେତରେ ପିଟି ପକାଉଥାଏ । ଏହିପରି ଅତ୍ୟାଚାରର ରାଜୁତି ସମୟରେ ଭାରତର ସ୍ୱାଧୀନତା ପାଇଁ ଇଂରେଜ ସରକାର ବିରୁଦ୍ଧରେ ଆଇନ ଅମାନ୍ୟ ଆନ୍ଦୋଳନ ପାଇଁ କଂଗ୍ରେସର ଡାକରା । ଗାନ୍ଧିଜୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ । ସାରା ଭାରତରେ ଚହଲ ପଡ଼ିଲା । କାକଟପୁରରେ ମଧ୍ୟ ଲବଣ ସତ୍ୟାଗ୍ରହ । ପୁରୀଜିଲ୍ଲାର କାକଟପୁର ଥାନାର ପାଟପୁର ଗାଁ । ଗତିକୃଷ୍ଣ ସ୍ୱାଇଁଙ୍କ ଗାଁ । ଏହି ଆନ୍ଦୋଳନରେ ବିଶ୍ୱବିଦ୍ୟାଳୟର ପାଠପଢ଼ା ଛାଡ଼ି ଗତିକୃଷ୍ଣ ସ୍ୱାଇଁ ଯୋଗଦେଲେ । ତାଙ୍କର ସଂଗ୍ରାମମୟ ଜୀବନ ଆରମ୍ଭ ହେଲା । ସଂଗ୍ରାମମୟ ତାଙ୍କର ଜୀବନବୃତ୍ତାନ୍ତ ଅତି ବିସ୍ତୀର୍ଣ୍ଣ । ପୁରୀ ଠାରେ ନିଜର ବେଶ ବଦଳାଇ ପ୍ରଚାରପତ୍ର ଗୁପ୍ତରେ ଲିଥୋ କରି ବାଣ୍ଟିବା ଓ ବଣ୍ଟାଇବା, ବିଦେଶୀ ଲୁଗା ଦୋକାନ, ଗଞ୍ଜେଇ, ଅଫିମ ଓ ମଦ ଦୋକାନ ସାମନାରେ ପିକେଟିଂ କରିବା ପାଇଁ ସତ୍ୟାଗ୍ରହୀ ସଂଗ୍ରହ କରି ପଠାଇବା ଓ ଆନ୍ଦୋଳନକୁ ପରିଚାଳନା କରିବା ଭଳି ବହୁ ଦାୟିତ୍ୱ ସେ ତୁଲାଉଥିଲେ । ସତ୍ୟାଗ୍ରହୀମାନଙ୍କ ପ୍ରତି ତାଙ୍କର ଖୁବ ଦରଦ ଥିଲା । ତାଙ୍କର ସ୍ନେହ ଓ ଦରଦରେ ସତ୍ୟାଗ୍ରହୀମାନେ ଅଭିଭୂତ ହୋଇ ଯାଉଥିଲେ ।

କଂଗ୍ରେସର ଆଇନ ଅମାନ୍ୟ ଆନ୍ଦୋଳନ ଭିତରେ .ଜମିଦାରୀ ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କଲେ । ଗାଁ ଗାଁରେ କୃଷୀମାନଙ୍କର ବୈଠକ କରି ସଂଗ୍ରାମ ପାଇଁ ସଂଗଠନ ଗଢ଼ିଲେ । ସମଗ୍ର କାକଟପୁର ଥାନାରେ କୃଷକ ଆନ୍ଦୋଳନ ତେଜି ଉଠିଲା । କୃଷକ ଯେଉଁ ଲୋକଙ୍କ ମୁହଁରୁ କଥା ବାହାରୁନଥିଲା ଭୟରେ, ସେମାନେ ଗଗନ କମ୍ପାଇ ସଭା ଶୋଭାଯାତ୍ରାରେ ସ୍ଲୋଗାନ ଦେଲେ—'ବେଠି, ଭେଟି ବନ୍ଦ ହେଉ, ବେଗମ ଛାଡ଼ ହେଉ, ଜମିଦାରୀ ଅତ୍ୟାଚାର ଓ ଶୋଷଣ ଲୋପ ହେଉ, ଜମିଦାରୀ ପ୍ରଥା ଉଚ୍ଛେଦ ହେଉ ।' ଏହିସବୁ ଆନ୍ଦୋଳନ ପଛରେ ଥିଲା ଗତିବାବୁଙ୍କ ନେତୃତ୍ୱ । ସେଥିପାଇଁ ତାଙ୍କୁ ଲୋକେ ଦେଇଥିଲେ 'ସର୍ଦ୍ଦାର' ଉପାଧି । ଏବଂ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ବୋଲି ଡାକୁଥିଲେ । ଦେଶ, ଜାତି ଓ ଶୋଷିତଲୋକଙ୍କ ମୁକ୍ତି ପାଇଁ ସେ ତାଙ୍କର ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଶୋଷିତ, ଅତ୍ୟାଚାରିତ କୃଷୀ, ମୂଲିଆ, ପ୍ରଜାମାନଙ୍କର ସ୍ୱାର୍ଥ ବିରୁଦ୍ଧରେ ଜମିଦାରଙ୍କର ସ୍ୱାର୍ଥରକ୍ଷା ପାଇଁ କଂଗ୍ରେସ ଯେତେବେଳେ ମୁହାଁଇଲା ଏବଂ କୃଷକ ଆନ୍ଦୋଳନ ବିରୁଦ୍ଧରେ ଗଲା ସେତେବେଳେ ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ଏବଂ ସମସ୍ତ ପ୍ରକାର ବାମପନ୍ଥୀ ଆନ୍ଦୋଳନର ନେତୃତ୍ୱ ନେଲେ । କାକଟପୁର ଅଞ୍ଚଳରେ ଗତିବାବୁ ଓ ନିମାପଡ଼ା ଅଞ୍ଚଳରେ ମୋହନ ଦାସଙ୍କ ନେତୃତ୍ୱରେ ଯେଉଁ କୃଷକ ଆନ୍ଦୋଳନ ତେଜି ଉଠିଲା ତାହା ଦାବାଗ୍ନି ଭଳି ପୁରୀ ଜିଲ୍ଲାର ସମଗ୍ର ଜମିଦାରୀ ଅଞ୍ଚଳକୁ ବ୍ୟାପିଗଲା । ଏହାକୁ ସାମନା କରି ନପାରି ୧୯୩୭ରେ ଗଠିତ କଂଗ୍ରେସ ସରକାର ବେଠି,

ଭେଟି, ସେସମ ଘୁଞ୍ଚକଲେ । ଏବଂ ସ୍ୱାଧୀନତା ପରେ ଜମିଦାରୀ ପ୍ରଥା ଉଚ୍ଛେଦ କରିବାକୁ ବାଧ୍ୟହେଲେ । ଜମି ଉପରେ ସିଲିଂ ଧାର୍ଯ୍ୟକଲେ । କମ୍ୟୁନିଷ୍ଟ ପାର୍ଟି ଓ କୃଷକସଭା ନେତୃତ୍ୱରେ ଯେଉଁ ଭାଗଚାଷ ଆନ୍ଦୋଳନ ହେଲା ତାହାର ପ୍ରତିରୋଧ କରିବାକୁ କଂଗ୍ରେସ ସରକାରର ସମସ୍ତ ଉଦ୍ୟମ ବିଫଳ ହେବାରୁ ଭାଗଚାଷ ଆଇନ କରିବାକୁ ବାଧ୍ୟ ହେଲା ।

ଏହିସବୁ ଆନ୍ଦୋଳନକୁ ନେତୃତ୍ୱ ଦେଉଥିବାରୁ ଏବଂ ପରିଚାଳନା କରୁଥିବାରୁ ତାଙ୍କୁ ସ୍ୱାଧୀନତା ପୂର୍ବରୁ ଓ ପରେ ବହୁଦିନ କାରାବରଣ କରିବାକୁ ପଡ଼ିଥିଲା । କଂଗ୍ରେସ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ବହୁଦିନ ପୁରୀ ଓ ପାଟନା କେମ୍ପ ଜେଲରେ ମଧ୍ୟ ତାଙ୍କୁ ବନ୍ଦୀ ଜୀବନ କଟାଇବାକୁ ପଡ଼ିଥିଲା । ସେତେବେଳେ ସେ ତୃତୀୟ ଶ୍ରେଣୀର ସାଧାରଣ ବନ୍ଦୀଭାବରେ ଥିଲେ । ସେ ଭୋଗର ଦାସ ନଥିଲେ, ଥିଲେ ତ୍ୟାଗର ପ୍ରତିମୂର୍ତ୍ତି । ତାଙ୍କର ଚାଲି ଚଳନ, ବେଶଭୂଷା ଥିଲା ଜଣେ ସାଧାରଣ ଚାଷୀଭଳି । ସେଥିପାଇଁ ସେ ଲୋକଙ୍କ ସହିତ ଏକାକାର ହୋଇଯାଇଥିଲେ ଏବଂ ଖଟିଖିଆ ଲୋକଙ୍କର ହୃଦୟ ସିଂହାସନରେ ବସିଥିଲେ ।

ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଥିଲେ ଏକ ଉଲ୍କା । ସାମ୍ରାଜ୍ୟବାଦ, ସାମନ୍ତବାଦ, ଜମିଦାର, ସାହୁକାରମାନଙ୍କ ଅତ୍ୟାଚାର ଓ ଶୋଷଣ ଲୋପ ପାଇଁ ପ୍ରଜ୍ଜ୍ୱଳିତ, ବେଗମାନ ଓ ଅକଳନ ଶକ୍ତିନେଇ ସୃଷ୍ଟି କରିଥିଲେ ପ୍ରଳୟ । ବ୍ରିଟିଶ ସାମ୍ରାଜ୍ୟବାଦ, ସାମନ୍ତବାଦ ଶୋଷକ ଶ୍ରେଣୀର ହୃତ୍‌କମ୍ପ ସୃଷ୍ଟି କରିଥିଲେ । ଆଜି ଉଲ୍କା ଝଡ଼ିପଡ଼ି ସେ ଶ୍ମଶାନରେ ମୁଠାଏ ଶୀତଳ ପାଉଁଶ । ସେହି ମୁଠାଏ ପାଉଁଶରେ ରହିଛି ଭାରତର ସ୍ୱାଧୀନତା ପାଇଁ ସାମ୍ରାଜ୍ୟବାଦୀ ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମର ଇତିହାସ, ଲବଣ ସତ୍ୟାଗ୍ରହ, ବ୍ୟକ୍ତିଗତ ଆଇନ ଅମାନ୍ୟ, ୧୯୪୨ ଅଗଷ୍ଟ ୯ର ଇତିହାସ, ଜମିଦାରୀ ଅତ୍ୟାଚାର ବିରୁଦ୍ଧରେ କୃଷକ ଆନ୍ଦୋଳନର ଇତିହାସ, ଯୁବ ଛାତ୍ର ଓ କମ୍ୟୁନିଷ୍ଟ ଆନ୍ଦୋଳନର ଇତିହାସ ଓ ଅତୀତର ଗୌରବମୟ ସଂଗ୍ରାମର ଇତିହାସ ।

ବାଜପୁର (କାକଟପୁର) ଠାରେ ନିକଟ ଅତୀତରେ (୧୯୯୨ ନଭେମ୍ବର ମାସରେ) ଅନୁଷ୍ଠିତ ପ୍ରାଦେଶିକ କୃଷକ ସମ୍ମିଳନୀରେ ସେ ତାଙ୍କର ଶେଷ ଡାକରା ଦେଇଥିଲେ "ଶୋଷଣ ପ୍ରଥା ଲୋପ ହେବାଯାଏ, ଶୋଷଣହୀନ ସମାଜ ପ୍ରତିଷ୍ଠା ହେବାଯାଏ ସଂଗ୍ରାମ ଅବ୍ୟାହତ ରଖ ।"

ସେ ପ୍ରାଦେଶିକ କୃଷକସଭା ଓ କମ୍ୟୁନିଷ୍ଟ ପାର୍ଟିର ପ୍ରାଦେଶିକ କମିଟି ଓ କାର୍ଯ୍ୟକାରୀ କମିଟିର ସଭ୍ୟଥିଲେ, ଏବଂ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର ଥିଲେ ।

ଶେଷ ନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ଲୋକଙ୍କର ବଞ୍ଚିବାର ଆନ୍ଦୋଳନ ଓ ନୂତନ ସମାଜ ଗଠନର ଆନ୍ଦୋଳନ ସହିତ ଜଡ଼ିତ ଥିଲେ । ଗତବର୍ଷ ବାଜପୁରଠାରେ (କାକଟପୁର) ବିରାଟ ଜନସମାବେଶରେ ସେ ତାଙ୍କର ଶେଷ ଭାଷଣ ଓ ବାର୍ତ୍ତା ତାଙ୍କର ପ୍ରାଣପ୍ରିୟ ଲୋକଙ୍କୁ ଓ ସାଥୀମାନଙ୍କୁ ଦେଇଥିଲେ । ତାହାହିଁ ଥିଲା ତାଙ୍କର ପ୍ରାଣସ୍ପର୍ଶୀ ବକ୍ତୃତା ଓ ଶେଷବାର୍ତ୍ତା । ଆଉ ତାହା ଶୁଣିବାକୁ ମିଳିବ ନାହିଁ । ତାଙ୍କଭଳି ନେତା, ବ୍ୟକ୍ତି, ବନ୍ଧୁ ବିରଳ । ତାଙ୍କର କର୍ମମୟ ତ୍ୟାଗପୂତ, ଆଦର୍ଶ ଜୀବନ ଚିରସ୍ମରଣୀୟ ହୋଇରହିବ ଉତ୍କଳର ଇତିହାସରେ, ଗବେଷକଙ୍କର ଗବେଷଣା ପାଇଁ ।

—୦—

# ମଣିଷ ଶ୍ରେଷ୍ଠ ଗଢିବାବୁ

● ଗଙ୍ଗାଧର ପାଇକରାୟ

ଗଢକୃଷ୍ଣ ସ୍ୱାଇଁ ଆମକୁ ଛାଡ଼ି ଚାଲିଗଲେ । ଗଲାବେଳେ କୌଣସି ବିଷୟରେ ନ କହି ଗଲେ । ଏବେ ତାଙ୍କର କାମ ଓ ବହୁ ଘଟଣାରେ ତାଙ୍କର ସାହାଯ୍ୟ ପରାମର୍ଶର ଆବଶ୍ୟକତା ଥିଲେ ମଧ୍ୟ ଆମେ ସେସବୁ ପାଇବାରୁ ବଞ୍ଚିତ ହୋଇଛୁ । ସେ ଦୀର୍ଘଦିନ କଂଗ୍ରେସରେ ଥିଲେ । ବହୁ ଆନ୍ଦୋଳନ ଯଥା ଲୁଣମରା ଅଫିସ ଘେରାଉ, ସତ୍ୟାଗ୍ରହ କରି କାରାବରଣ କରିଥିଲେ । ୧୯୩୧-୩୨ ମସିହାରେ ସେ ପୁରୀଜିଲ୍ଲା ସ୍ୱାଧୀନତା ଆନ୍ଦୋଳନର ଡିକ୍‌ଟେଟର ଥିଲେ । ତାଙ୍କର ନିର୍ଦ୍ଦେଶରେ ଗୋଟିଏ ପରେ ଗୋଟିଏ ବ୍ୟାଚ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ କରି କାରାବରଣ କରୁଥିଲେ । ତାଙ୍କର ନିର୍ଦ୍ଦେଶ ମୋ ପାଖକୁ ୧୯୩୨ ମସିହା ଜାନୁଆରୀ ମାସ ପ୍ରଥମ ସପ୍ତାହରେ ଆସିଥିଲା ଯେ ତମେ ୫ମ ବ୍ୟାଚର ନେତୃତ୍ୱରେ ୧୦ ଜଣ ସତ୍ୟାଗ୍ରହୀଙ୍କୁ ଧରି କାରାବରଣ କରିବ । ତାଙ୍କର ନିର୍ଦ୍ଦେଶରେ ଆମ୍ଭେମାନେ ଗିରଫ ହୋଇ ପ୍ରଥମେ ଖୋର୍ଦ୍ଧା ଜେଲ୍, ପରେ ପୁରୀ ଜେଲ୍ ଓ ବିହାରର ରାଜଧାନୀ ପାଟନାସ୍ଥ ବାଙ୍କୀପୁର ଜେଲ୍‌ରେ ଦୀର୍ଘଦିନ ରହିଥିଲୁ । ୧୯୩୨ ମସିହା ଜାନୁଆରୀ ୧ ତାରିଖରେ ବ୍ରିଟିଶ ସରକାର ଅଧ୍ୟାଦେଶ କରି କଂଗ୍ରେସ ସଙ୍ଗଠନକୁ ବେଆଇନ କରିଥିଲା । ୧୯୩୨ ମସିହାରେ ପୁରୀରେ ନିଖିଳଭାରତ କଂଗ୍ରେସ ସମ୍ମିଳନୀ ହେବାପାଇଁ ପୂର୍ବରୁ ସିଦ୍ଧାନ୍ତ ହୋଇଥିବା ଯୋଗୁଁ ବହୁ ସରଞ୍ଜାମ କଣାହେବା ସଙ୍ଗେ ସଙ୍ଗେ ଅଭ୍ୟର୍ଥନା ପାଇଁ ଆଦାୟ ହୋଇଥିବା ଟଙ୍କା ବ୍ୟାଙ୍କମାନଙ୍କରେ ଥିଲା । ଜଗନ୍ନାଥ ମିଶ୍ର କୋଷାଧ୍ୟକ୍ଷ ଥିଲେ । ତତ୍କାଳୀନ କଲେକ୍ଟର ଯୋଗାନ ଜଗନ୍ନାଥ ବାବୁଙ୍କୁ ଆଦେଶ ଦେଲେ ଯେ ୪୮ ଘଣ୍ଟା ମଧ୍ୟରେ ତମର ସମସ୍ତ ସରଞ୍ଜାମ ନେବା ସଙ୍ଗେ ସଙ୍ଗେ ବ୍ୟାଙ୍କ ଟଙ୍କା ଉଠାଇ ନିଅ ନଚେତ୍ ସବୁ ବାଜ୍ୟାପ୍ତି ହୋଇଯିବ । ତାଙ୍କ ପରାମର୍ଶ ଆମ ଅଭ୍ୟର୍ଥନା କମିଟି ଗ୍ରହଣ କରିଥିଲା । ଅଭ୍ୟର୍ଥନା କମିଟିର ବୈଠକ ବହୁ ସମୟରେ ଜଗନ୍ନାଥ ମହାନ୍ତିଙ୍କ ହୋଟେଲ ଠାରେ ହୋଇଥାଏ । ପାଟନା ଜେଲ୍‌ରେ ପୁରୀ ଜିଲ୍ଲାର ୭/୮ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କର ମୃତ୍ୟୁ ହୋଇଯାଇଥିଲା । କାରଣ କରଗେଟେଡ ଚଦରରେ ତିଆରି ଘର ଓ ଏଣେ ଗରମ ତାପ ଏଭଳି ଯେ ୧୧୨° ରୁ ୧୧୭° ଉତ୍ତାପ ଯୋଗୁଁ ମୃତ୍ୟୁ ହୋଇଥିଲା । ଗଢବାବୁ ଏ ଘଟଣାରେ ବଡ଼ ମର୍ମାହତ ହୋଇଥିଲେ । ସେଭଳି ଅଗ୍ନିଉତ୍ସବ ପାଇଁ ଜେଲ୍ ଭିତରେ ପାରିବା ସୁପରିଟେଣ୍ଡେଣ୍ଟ ନଡା ନଦେବାରୁ ଆମ୍ଭେମାନେ ଗୋଟିଏ ଗୋଟିଏ କମ୍ବଳ ସଂଗ୍ରହ କରି ଅଗ୍ନିଉତ୍ସବରେ ପୋଡ଼ିଲାବେଳେ ପ୍ରବଳ ଲାଠିପ୍ରହାର ହେଲା ପାରିବା ସୁପରିଟେଣ୍ଡେଣ୍ଟଙ୍କ ନିର୍ଦ୍ଦେଶରେ । ଅଗ୍ନିଉତ୍ସବ ବିହାରର ଏକ ପ୍ରଧାନ ଉତ୍ସବ । ୧୯୩୨ ମସିହାରେ ସତ୍ୟାଗ୍ରହପାଇଁ ଜିଲ୍ଲାତମାମ ବୁଲି ବୁଲି ଆମ୍ରରୋପଣରେ ମଧ୍ୟ ସତ୍ୟାଗ୍ରହୀଙ୍କୁ ସଂଗ୍ରହ କରୁଥିଲେ । ମୁଁ ଦେଖିଛି ପ୍ରାଣନାଥ ପଟ୍ଟନାୟକଙ୍କ ମୃତ୍ୟୁରେ ସେ ହତାଶ ହୋଇପଡିଥିଲେ କିଛି ସମୟ ପାଇଁ । ନିମାପଡ଼ାରେ ୧୯୪୪-୪୫ ମସିହାରେ ରାଜ୍ୟ କୃଷକ କନ୍‌ଭେନ୍‌ସନ୍ ହୋଇଥିଲା । ସମ୍ମିଳନୀ ପାଇଁ କଂଗ୍ରେସ ତରଫରୁ ପ୍ରବଳ ବିରୋଧ ହୋଇଥିଲା । ତାହା ସତ୍ତ୍ୱେ ସେ ଅଞ୍ଚଳର ମୋହନ ଦାସ, ଘନଶ୍ୟାମ ଦାସଙ୍କ ନେତୃତ୍ୱରେ ହଜାର ହଜାର ଲୋକ ଯୋଗଦେବା ସଙ୍ଗେ ସଙ୍ଗେ ଗଢବାବୁଙ୍କ ନେତୃତ୍ୱରେ ୧୪-୧୫ ମାଇଲ ବୁଲି ବୁଲି ପ୍ରାୟ ୪-୫ ହଜାର ଲୋକ ସଭାରେ ଯୋଗ ଦେଇଥିଲେ । ଦଳେ କଂଗ୍ରେସ ନାମରେ ସଭା ମଧ୍ୟରେ ପଶି ଗୋଳମାଳ ସୃଷ୍ଟି କରିଥିଲେ । ନୀଳଗିରିର କମ୍ୟୁନିଷ୍ଟ ନେତା ବନମାଳୀ ଦାସଙ୍କ ନେତୃତ୍ୱରେ ଆସିଥିବା ଛଉନାଚ ସଭାମଣ୍ଡପ ଉପରେ ଏ ପ୍ରକାର ବିପ୍ଳବୀ ଗୀତ ଗାଇଥିଲେ ଯଥା—"ଅରେ ଟାଇଗର, ଦୂରେ ଦୂରେ ଦୂର୍. କୋଟି କଣ୍ଠେ ଉଠେରେ ମିଳନର ସୁର୍" ଇତ୍ୟାଦି । ହଜାର ହଜାର ଜନସାଧାରଣ ଏହି ଗୀତକୁ ଗାଇ ଫେରି-ଯାଅ ଫେରିଯାଅ ସ୍ଲୋଗାନ ଦେଇଥିଲେ ଯାହାଫଳରେ ସଭାକୁ ଭାଙ୍ଗିବାକୁ ଆସିଥିବା ୧୦-୨୫ ଜଣ ଲୋକ ଫେରିଯାଇଥିଲେ । ବନ୍ୟା ହେଲା । ଢେଙ୍କିଆଗାଇ ଭାଙ୍ଗିଲା ନିମାପଡ଼ାଠାରେ ଏବଂ ଅସ୍ତରଙ୍ଗ କାକଟପୁରରେ ବିରାଟ ଅଞ୍ଚଳ ମଧ୍ୟ ବଢ଼ିଯୋଗୁଁ

ଘରଦ୍ୱାର ଲୁଣ୍ଠିଲେ । ଏହିସବୁ ଅଞ୍ଚଳକୁ ରିଲିଫ୍ ସାମଗ୍ରୀ ନେଇ ଯାଉଥିଲେ । ଗଡ଼ବାବୁଙ୍କ ପରାମର୍ଶକ୍ରମେ ତାଙ୍କର ସମ୍ପୂର୍ଣ୍ଣ ସାହାଯ୍ୟରେ ଏସବୁ ସୁରୁଖୁରୁରେ ବଣ୍ଟନ କରାଯାଇଥିଲା । ସେ ଆସେମ୍ବ୍ଲି ସଭ୍ୟଥିଲାବେଳେ କୃଷକମାନଙ୍କ ସମସ୍ୟା ସମ୍ପର୍କରେ ବକ୍ତୃତାଦେବାକୁ ଆଗ୍ରହ ପ୍ରକାଶ କରୁଥିଲେ । ସେଇଥିପାଇଁ ସେ ଆସେମ୍ବ୍ଲିର କୃଷକ ସମସ୍ୟା ପାଇଁ ଗଢ଼ାଯାଇଥିବା କମିଟିରେ ସଭ୍ୟ ଥିଲେ ।

ଖୋର୍ଦ୍ଧାର ଏଖରଜାତ ଅଞ୍ଚଳରେ ଆନ୍ଦୋଳନ ପ୍ରବଳ ହେଉଥାଏ । ପୁରୀରେ କମ୍ୟୁନିଷ୍ଟ ପାର୍ଟି ତରଫରୁ ଏକ ବିରାଟ ପଟୁଆର ଯାଉଥାଏ କଲେକ୍ଟରଙ୍କ ଅଫିସକୁ ପୁରୀ ବଡ଼ଦାଣ୍ଡ ଦେଇ । କେତେକ ମହାନ୍ତ ମୋତେ ପଟୁଆରରୁ ଟାଣିଆଣି ବାଡ଼େଇବା ପାଇଁ ଯୋଜନା କରିଥିଲେ । ଗଡ଼ବାବୁ ଅଧଘଣ୍ଟାଏ ପୂର୍ବରୁ ଦୁଇଜଣଙ୍କ ସନ୍ଧ ଶୁଣିବାପାଇଁ କହି ପଟୁଆର ମଧ୍ୟରୁ ଦୂରକୁ ଟାଣିନେଇ ଆଉ ଜଣଙ୍କ ଘରେ ମତେ ରଖିଲେ ଓ କାଳେ ପୁଣି ମୁଁ ପଟୁଆରକୁ ଯିବି ତେଣୁ ପାଖରେ ନିଜେ ଉପସ୍ଥିତ ରହିଲେ । କହିଲେ ଯେ ମଠର ଗୁଣ୍ଡାମାନେ ତୁମକୁ ବାଡ଼େଇବେ । ସେ ଦିନର ମାଡ଼ର ବିପତ୍ତିରୁ ଗଡ଼ବାବୁ ରକ୍ଷା କରିଥିଲେ । ସାଥୀମାନଙ୍କୁ ମଠମହାନ୍ତ, ଜମିଦାର, ପୋଲିସ କବଳରୁ ରକ୍ଷା କରିବା ପାଇଁ ତାଙ୍କର ଏପରି ଅନେକ ଉଦ୍ୟମର ଦୃଷ୍ଟାନ୍ତ ରହିଛି । ଗଡ଼ବାବୁଙ୍କର ଅଦ୍ଭୁତ ସାହସ ଓ ବିଚକ୍ଷଣ ବୁଦ୍ଧି ଦରିଦ୍ର ଜନସାଧାରଣଙ୍କ ପାଇଁ ପ୍ରାଣଦେଇ ସଂଗ୍ରାମ କରିବା ଓ କମ୍ୟୁନିଷ୍ଟ ପାର୍ଟିକୁ ସବୁ ଦିଗରୁ ଶକ୍ତିଶାଳୀ କରିବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ ସବୁଦିନପାଇଁ ସ୍ମରଣୀୟ ହୋଇ ରହିବ । ତାଙ୍କର ଏହି ସ୍ମୃତି ଚିରକାଳପାଇଁ ଅବିସ୍ମରଣୀୟ ମଧ୍ୟ ।



A/56, ଖାରବେଳ ନଗର
ଭୁବନେଶ୍ୱର-୯

# ସାଥୀ ଗତିକୃଷ୍ଣ ସ୍ୱାଇଁଙ୍କ ସ୍ମୃତି ପ୍ରତି ଶ୍ରଦ୍ଧା ନିବେଦନ

● ଗୋବର୍ଦ୍ଧନଚନ୍ଦ୍ର ମହାନ୍ତି

ସାଥୀ ଗତିକୃଷ୍ଣ ସ୍ୱାଇଁ ଆମକୁ, ତାଙ୍କ ପ୍ରିୟ ଜନ୍ମମାଟି ପାଟପୁର, ତାଙ୍କ ପ୍ରଧାନ କର୍ମସ୍ଥଳୀ କାକଟପୁର, ତାଙ୍କ ପରିବାରକୁ ଛାଡ଼ି ବର୍ତ୍ତିଗଲେ ଚିରକାଳ ଲାଗି ଚାଲିଗଲେ । ହୁଏତ ରୋଗଶଯ୍ୟାରେ ଭଲାଭଲି ଜାଣିଥିବାବେଳେ ମୃତ୍ୟୁ ଆସନ୍ନ ଜାଣି ସେ ତାଙ୍କ ଗାଁ ଚାଟଶାଳୀପାଠ, ପୁଣ୍ୟାତ୍ମା ଗୋପବନ୍ଧୁ ଦାଶଙ୍କର ସତ୍ୟବାଦୀ ବନବିଦ୍ୟାଳୟ, କଟକରେ କଲେଜ ପାଠପଢ଼ାବେଳେ ପଢ଼ାଛାଡ଼ି ସ୍ୱାଧୀନତା ସଂଗ୍ରାମର ନିଆଁକୁ ଡେଇଁବା କଥା ମନେପକାଉଥିବେ । ମନେପକାଉଥିବେ ସ୍ୱାଧୀନତା ସଂଗ୍ରାମର ସେ କାଳର ବହୁ ନେତା ଓ କର୍ମୀମାନଙ୍କୁ । ମନେପକାଉଥିବେ ୧୯୩୦ ଓ ୩୨, ୧୯୪୦ ଏବଂ ୧୯୪୨ର କାରାବାସର ଦିନଗୁଡ଼ିକୁ । ମଝିମଝିରେ ହେଇ ହେଉଥିବ କିପରି ଜମିଦାରଙ୍କ ଦ୍ୱାରା ଧୋବାଭଣ୍ଡାରୀ ବାସନ୍ଦ ହୋଇ ଦାଢ଼ି ଚଷିବା ଓ ଜମିଦାରଦ୍ୱାରା ବାସନ୍ଦ ହୋଇଥିବା ପ୍ରଜାମାନଙ୍କୁ ମେଳିକରାଇ କୃଷୀମାନଙ୍କୁ ମଠମହନ୍ତ ଓ ଜମିଦାରମାନଙ୍କ ଅତ୍ୟାଚାର, ନିର୍ଯ୍ୟାତନାର ବେଠି, ବେଗାରି ମାଗଣରେ, ନାଗ୍ରା ଧର୍ମଣରେ ଏବଂ ମହିଳାଙ୍କୁ ଉଲଗ୍ନ କରି ଗଛରେ ବନ୍ଧାଇ ଜମିଦାରଲୋକଙ୍କ ଦୁର୍ଗ ଉଚ୍ଛେଦ, ଟିଟିକାର ବିରୁଦ୍ଧରେ ସଂଗ୍ରାମର କଥା । ମନେପକାଉଥିବେ ସ୍ୱାଧୀନତା ପରବର୍ତ୍ତୀ କାଳରେ ନୂତନ ମତାଦର୍ଶରେ ଦୀକ୍ଷିତ ହୋଇ ସେହି ଦଳିତ, ଶୋଷିତ, ନିର୍ଯ୍ୟାତିତ ଲୋକଙ୍କ ପେଟପାଟଣା, ଦାନାକନା, ପାଇଁ ଲଢ଼ିଲାବେଳେ ସ୍ୱାଧୀନ ଭାରତରେ ପ୍ରତିଷ୍ଠିତ ସରକାର ତାଙ୍କ ଉପରେ, ତାଙ୍କର ଆଦର୍ଶର ନେତା ଓ କର୍ମୀମାନଙ୍କ ଉପରେ ଦମନର ଓ ଦୀର୍ଘ କାରାବାସର ରହସ୍ୟ କଥା । ମନେପକାଉଥିବେ କାକଟପୁରର ପ୍ରତିଟି ଗାଁକୁ, ଓଡ଼ିଶାର ଯେଉଁ ଗାଁ ଓ ଯେଉଁ ସ୍ଥାନକୁ ଯାଇ ଲୋକଙ୍କ ପାଖରେ ଛିଡ଼ା ହୋଇଛନ୍ତି, ସେ ସ୍ଥାନଗୁଡ଼ିକର ସଂଗ୍ରାମ, ସମସ୍ୟା କଥା । ମନେପକାଉଥିବେ ମୂଳାଗଡ଼ ଆଶ୍ରମ କଥା । ମନେପଡୁଥିବ ଇରମ ଇଂଚୁଡ଼, ଅସୁରଙ୍ଗ ଲୁଣମରା ସଂଗ୍ରାମକଥା । ମନେପକାଉଥିବେ ଗୋପ, କାକଟପୁର ନିମାପଡ଼ାର ତାଙ୍କ ଶତ ଶତ ସହକର୍ମୀ, ସ୍ୱାଧୀନତା ସଂଗ୍ରାମୀ ଓ କମ୍ୟୁନିଷ୍ଟ ସାଥୀଙ୍କୁ ଓ ପାଟପୁର, ବାରିପୁର, ଉଦୟପୁର ଓ ଆଉ ଅନେକ ଗାଁକେନ୍ଦ୍ର କମିଟି କଥା । ତାଙ୍କ ଦୃଷ୍ଟିରେ ପ୍ରକୃତରେ ଗ୍ରାମ ସ୍ୱରାଜ କଥା । ମନେପକାଉଥିବେ ପାଟପୁର ହେଉ ବା ଅନ୍ୟତ୍ର ହେଉ, ଶିକ୍ଷା, ସ୍ୱାସ୍ଥ୍ୟର ପ୍ରସାର ପାଇଁ କ୍ଲବ, କମିଟି, ପାଠାଗାର ଉଚ୍ଚବିଦ୍ୟାଳୟ, ଚିକିତ୍ସାଳୟ ଲାଗି ନିଜ ଉଦ୍ୟମର କଥା । ତାଙ୍କ ସେବାକଥା ।

ଦେଶ ଓ ଆମ ରାଜ୍ୟରେ କୃଷିମୂଲିଆ, ପାନଚାଷୀ, ନଡ଼ିଆଚାଷୀ, ତନ୍ତୀଙ୍କ ସମସ୍ୟା, ବଢ଼ିମରୁଡ଼ିବେଳର ଲୋକଙ୍କ ଆର୍ତ୍ତନାଦବେଳେ ସେ ଓ ତାଙ୍କ ସହଯୋଗୀ ସହକର୍ମୀମାନଙ୍କ କେତେ ଆନ୍ଦୋଳନ, କେତେ ଜେଲଦଣ୍ଡକଥା । ମନେ ପକାଉଥିବେ ତାଙ୍କର ଅଗଣିତ ସହକର୍ମୀଙ୍କୁ—ଆଉ ମନେପକାଇ ଖେଦ କରୁଥିବେ କେଳୁ-ସମ୍ପଦ-ଙ୍କୁ—ଯେଉଁମାନେ ପୁଲିସର ଶିକାର ହେଲେ—ତାଙ୍କ ନିଜ ଗାଁର, ସେମାନଙ୍କ ଶୋକରେ ବିଶାଳ ଜନସଭାକୁ—ସେମାନଙ୍କ ସ୍ମୃତିସ୍ତମ୍ଭକୁ । ସେହି ବ୍ୟକ୍ତିଟିକୁ ଆଦରରେ ଲୋକେ ଉପାଧି ଦେଲେ ସର୍ଦ୍ଦାର । ସବୁ ନେତା କର୍ମୀ ତାଙ୍କୁ ସର୍ଦ୍ଦାର ଗତିକୃଷ୍ଣ ରୂପେ ଶ୍ରଦ୍ଧା ସମ୍ମାନ ଦେଲେ । ହେଇ ହେଉଥିବ ବ୍ରହ୍ମପୁର ଜେଲରେ ଶହୀଦ୍ ଲକ୍ଷ୍ମଣ ନାୟକଙ୍କୁ ।

ଏମିତି ସବୁକାମ କରିବା ଲୋକ ସେ ତ ଏକା ନୁହନ୍ତି । ଅନେକ ବାହାରିଛନ୍ତି । ଏଥିରେ କଣ ତାଙ୍କର ବିଶେଷତ୍ୱ ନିହିତ ? ଏଇଠି କ'ଣ ସେ ବ୍ୟକ୍ତିଟିର ମହତ୍ତ୍ୱ ସୀମିତ ।

ସତରେ ଏକ ଭିନ୍ନଧରଣରେ ଗଢ଼ା ମଣିଷଟିଏ ସିଏ । ସେହି ଭିନ୍ନ ଧରଣରେ ଗଢ଼ା ବାଙ୍ଗର ଗତିକୃଷ୍ଣ ଦେଖୁ ତାଙ୍କ ୭୫ ବର୍ଷରୁ ଅଧିକ କାଳ ସାମାଜିକ ଜୀବନରେ ଓ ରାଜନୈତିକ ଜୀବନରେ ଯେତେ ଝଡ଼ଝଞ୍ଜା ଆସୁପଛେ, ଯେତେ ଯାହା ପରିବର୍ତ୍ତନ ଘଟୁପଛେ, ଯିଏ ତାଙ୍କ ସଙ୍ଗରେ ଏସବୁ କ୍ଷେତ୍ରରେ ଅତୀତରେ ଥିଲେ, ପରେ ସେମାନଙ୍କ ସାଙ୍ଗ ଆଦର୍ଶଗତ

କାରଣରୁ ସେ ଛୁଞ୍ଚଅ.ସିଛନ୍ତି, ସେମାନଙ୍କଠାରୁ ଶ୍ରଦ୍ଧା ସମ୍ମାନ ପାଉଥିଲେ । ଆଉ ସେଉଁମାନେ ସ୍ୱାଧୀନତା ପରବର୍ତ୍ତୀକାଳରେ ତାଙ୍କର ନେତା, ସହକର୍ମୀ ହେଲେ ସେମାନଙ୍କଠାରୁ ମଧ୍ୟ ଅନୁରୂପ ଶ୍ରଦ୍ଧା, ସମ୍ମାନ, ଓ ସ୍ନେହ ପାଉଥିଲେ । ତାଙ୍କ ଦୈନନ୍ଦିନ ଜୀବନରେ, ତାଙ୍କର ରାଜନୈତିକ ଜୀବନରେ ଗୋଟାଏ ଭିନ୍ନ ଧରଣର ମାର୍କା ଥିଲା । ଯାହା ସମସ୍ତଙ୍କୁ ମୁଗ୍ଧ କରୁଥିଲା । ସେହି ସୁରୁଗୁରୁଙ୍କର ଅଧିକାଂଶ ହେବାରେ ସେ ଥିଲେ ଅନୁକରଣୀୟ ।

ତାଙ୍କର ଅସୁସ୍ଥତା ଗମ୍ଭୀର ହେବା ଶୁଣି ତାଙ୍କ ସହିତ ସଙ୍ଗନରେ ଶେଷଦେଖା କରିବାକୁ ଯାଇଥାନ୍ତି ଗୁରୁଚରଣ ପଟ୍ଟନାୟକ । ଯିଏ ସ୍ୱାଧୀନତା ସଂଗ୍ରାମ ବେଳେ ଗତିବାବୁଙ୍କଠାରୁ ପିଲାଏଟିଏ ବୋଲି ଗୋଡ ମୋଡ଼ା ଖାଉଥିଲେ, ଗାଁରୁଗାଁ ସ୍ୱାଧୀନତା ବାର୍ତ୍ତା ପ୍ରଚାର କଲାବେଳେ ଧରା ପଡ଼ୁଥିଲେ ଓ ଗତିବାବୁ ତାଙ୍କୁ ଛାଡ଼େଇନେବାକୁ ବସୁଥିଲେ । ତାଙ୍କ ସହିତ ଗଲେ ଦୁର୍ଗାଚରଣ ମହାନ୍ତି, ନନ୍ଦକିଶୋର ପଟ୍ଟନାୟକ । ଭାବାବେଗରେ ସେମାନଙ୍କ ସହିତ ଯାଇଥାଏ ମୁଁ ମଧ୍ୟ । ଚେତା ପ୍ରାୟ ନଥାଏ । ଆମ ସମସ୍ତଙ୍କ ନାମ ଧରି ସ୍ଥାନୀୟ ସାଥୀମାନେ ତାଙ୍କୁ ଚେତା କରାଇବାକୁ ଚେଷ୍ଟା କଲେ । ସଫଳ ହେଲେ, ଆଖି ଖୋଲିଗଲା—ମୁହଁରେ ମୃଦୁ ହସ ଚେନାଏ । ସମସ୍ତଙ୍କ ହାତ ଚିପିଲେ । ବିଦାୟ ନେଲୁ । ଦେଖିବାକୁ ଗଲୁ ପ୍ରଖ୍ୟାତ ଋଷିନେତା ମୋହନ ଦାସଙ୍କୁ । ସତାଅଶି ଧରିଲାଣି । କି ପ୍ରଖର ମସ୍ତିଷ୍କ ।

ଭାବିଲୁ ଗତିବାବୁଙ୍କ ଏହି ହସ ଆହୁରି କେତେଦିନ ଲହରିବ । ସେ ସୁସ୍ଥ ହେବେ । ହେଲାନାହିଁ । ସେ ବ୍ୟକ୍ତିଟି ! କାହାରି ଉପରେ ନିର୍ଭର କରିବେନି । ନିଜ କାମ ନିଜେ କରିବେ । ଗିଲାସଟି ଢ଼ାଳ, ବାଲିଟିରେ ପିଇବା ଜଳ ରଖିବେ । ପୁଅବୋହୂ, ପତ୍ନୀଙ୍କୁ ନିବାରଣ କରି ନିଜ ବାସନ ନିଜେ ମାଜିବେ । ସବୁ ନିତ୍ୟକର୍ମ ସାରି କୋଉ ଗାଁକୁ ଯିବେ—ବୈଠକ କରିବେ, ସାଧାରଣସଭା କରିବେ, କର୍ମୀସଭା ଡକେଇବେ, ଆନ୍ଦୋଳନର ବ୍ୟବସ୍ଥା କରିବେ । କିନ୍ତୁ ନିଜକୁ ଦେଖେଇହେବେ ନାହିଁ । ନିଜ କାମ କରୁକରୁ ଗୋଡ଼ ଖସିଲା । ଉଠିବେଟି ଭବନକୁ ଅଣାହେଲେ । ସାଥୀମାନେ ଘେରିଗଲେ । ଭୁବନେଶ୍ୱରରେ ଚିକିତ୍ସା ଚାଲିଲା । ଅଧା ଭଲହୋଇ ଘରକୁ ବାହୁଡ଼ିଲେ । ମାତ୍ର ତାହାହିଁ ହେଲା ଶେଷ ବିଦାୟ ।

ଏହାହିଁ ଶେଷ ଦେଖା । ତାଙ୍କ ସମ୍ପର୍କରେ କିଛି ସ୍ମୃତିଚାରଣ କଲାବେଳେ ମନେପଡ଼େ ମୋତେ ଅନେକ ସାଥୀ, ସହକର୍ମୀ ନେତାଙ୍କ ସ୍ମୃତିଚାରଣ କରିବାର ଅଭ୍ୟାସ । ଆଜି ଗତିବାବୁଙ୍କ ପ୍ରତି ଶ୍ରଦ୍ଧା ନିବେଦନ । ଯେଉଁମାନଙ୍କ ସ୍ମୃତିଚାରଣ କରିଛି, ଦଳମତ, ବୟସ, ପଦପଦବୀ ନିର୍ବିଶେଷରେ ସେମାନେ ଗତିବାବୁଙ୍କୁ ଏକ ଆଦର୍ଶ ସ୍ୱାଧୀନତା ସଂଗ୍ରାମୀ, ଆଦର୍ଶ ଋଷି ନେତା, ଆଦର୍ଶ କମ୍ୟୁନିଷ୍ଟ ବୋଲି ବିଚାରୁଥିଲେ ଓ ଶ୍ରଦ୍ଧା ସମ୍ମାନ କରୁଥିଲେ । ତାଙ୍କର ସେହି ଗୁଣମୁଗ୍ଧ ଗତାୟୁ ସାଥୀ ଓ ସହକର୍ମୀ ଯାହାଙ୍କ ସ୍ମୃତିଚାରଣ କରିବାକୁ ମୋତେ ପଡ଼ିଛି ସେମାନଙ୍କ ଭିତରେ ଥିଲେ ପ୍ରାଣନାଥ ପଟ୍ଟନାୟକ, ସାଧୁଚରଣ ମହାନ୍ତି, ଗୋବିନ୍ଦ ପ୍ରଧାନ, ରାମକୃଷ୍ଣ ପତି, ରାମଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ରାମ, ଅନନ୍ତ ପଟ୍ଟନାୟକ, କୃଷ୍ଣପ୍ରସାଦ ପଟ୍ଟନାୟକ, ଶରତ ପଟ୍ଟନାୟକ, ଦୟାନିଧି ଶତପଥୀ, କୃପାସିନ୍ଧୁ ଖୁଣ୍ଟିଆ, ହରିବନ୍ଧୁ ବେହେରା, ହରିହର ପତି, ସର୍ଦ୍ଦାର ଦଣ୍ଡପାଣି ସ୍ୱାଇଁ, କାଳୀ ପଣ୍ଡା, ସୂର୍ଯ୍ୟନାରାୟଣ ଆଚାରୀ, ଉପେନ୍ଦ୍ର ଦାଶ, ହୃଷୀକେଶ ପ୍ରଧାନ, ଯୁଧିଷ୍ଠିର ମିଶ୍ର, ଅଧିକାରୀ ମହାନ୍ତି, ଗିରିଶଚନ୍ଦ୍ର ରାୟ, ଭଗବାନ ଖେମୁଣ୍ଡୁ ନାୟକ, ବ୍ରଜକିଶୋର ପଟ୍ଟନାୟକ ଲକ୍ଷ୍ମଣ ପୂଝାରୀ, କୃଷ୍ଣପ୍ରସାଦ ମିଶ୍ର. ଗୋବିନ୍ଦଚନ୍ଦ୍ର ପଣ୍ଡା, ଗଙ୍ଗାଧର ମହାନ୍ତି, ପ୍ରହ୍ଲାଦ ଜେନା, ହୃଷିକେଶ ସାମଲ । ଏହି ସ୍ମୃତି ତର୍ପଣ କଲାବେଳେ ଗତିବାବୁଙ୍କ ଗୁଣମୁଗ୍ଧ ହରିହର ଦାଶଙ୍କୁ ଶ୍ରଦ୍ଧା ନିବେଦନ କରିବାକୁ ପଡ଼ୁଛି । ଏମିତି ଅନେକ । ଉଚ୍ଚଶିକ୍ଷା, ବିଚକ୍ଷଣତା ପଦପଦବୀରେ ଏମାନଙ୍କ ମଧ୍ୟରୁ ଅନେକ ଗତିବାବୁଙ୍କ ଠାରୁ ଆଗରେ ବୋଲି ସମାଜ ଗ୍ରହଣ କରିନେଇଥିଲା । ମାତ୍ର ଏମାନେ ସମସ୍ତେ ଗତିବାବୁଙ୍କଠାରେ ନିହିତ ମାନବୀୟ ଗୁଣକୁ ଓ ତାଙ୍କର ସଂଗ୍ରାମ ଓ ସାଧନାକୁ ସମ୍ମାନ ଦେଉଥିଲେ ।

ସ୍ମୃତିଚାରଣ କରିଛି ସ୍ୱାଧୀନତା ସଂଗ୍ରାମର ଅନେକ ନେତାଙ୍କର. ଯେମିତି ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ସାରଙ୍ଗଧର ଦାସ ଏମିତି ଅନେକ ଉଚ୍ଚନେତା । ଏମାନେ ଗତିବାବୁଙ୍କ ପରବର୍ତ୍ତୀକାଳରେ ରାଜନୀତିର ବିରୋଧୀ । କିନ୍ତୁ ସେମାନଙ୍କ ଭିତରୁ ଯିଏ ଯାଇଛନ୍ତି, ତାଙ୍କ ଗୁରୁ ଆଚାର୍ଯ୍ୟ ହରିହର, ନୀଳକଣ୍ଠ, ସତ୍ୟବାଦୀ ନନ୍ଦ, ଗୋଦାବରୀଶ ହୁଅନ୍ତୁ

ବା ଅନ୍ୟ ଦୁଇନେତା ଓ କର୍ମୀ ଥିଥିଲେ ଓ ଏବେବି ଯେଉଁମାନେ ରହିଛନ୍ତି, ସେମାନେ ଗତିକୃଷ୍ଣଙ୍କୁ ସମ୍ମାନ, ଶ୍ରଦ୍ଧା ଦେଇ ଆସିଛନ୍ତି ।

ସେହି ବ୍ୟକ୍ତିଟିର ଜନପ୍ରିୟତାର କାରଣ କ'ଣ ? ସେ ସବୁ ଗୁଣ ହେଲା, ତାଙ୍କର ସରଳ, ସୁମଧୁର ବ୍ୟବହାର । ସବୁ କରିପାରିଛନ୍ତି, ଅନେକ ସଂଗ୍ରାମର ନେତୃତ୍ୱରେ ରହିଛନ୍ତି—ଶହ ଶହ କର୍ମୀ ଓ ସାଥୀଙ୍କୁ ଆକୃଷ୍ଟ କରି ସଂଗ୍ରାମରେ ଅବତୀର୍ଣ୍ଣ କରାଇଛନ୍ତି । କିନ୍ତୁ ଅଶୁମାତ୍ର ଆତ୍ମବଡ଼ିମା ନାହିଁ, ଅହଂଭାବ ନାହିଁ, ରାଜନୈତିକ ମତବାଦ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ସ୍ନେହ, ସରଳ ଆନ୍ତରିକ ବ୍ୟବହାର । ଟିକିଏ ହେଲେ ଆତ୍ମପ୍ରଚାର, ଆତ୍ମପ୍ରଶଂସା ନାହିଁ । ପଦପଦବୀ ପାଇଁ ଲାଳସା ନାହିଁ କି ପ୍ରତିଦ୍ୱନ୍ଦିତା ନାହିଁ । ସବୁ ସାଥୀଙ୍କ ପ୍ରତି ଦରଦ, ପ୍ରୀତିଭାବ । କାକଟପୁରର ପ୍ରତ୍ୟେକ ଚାଷୀଘରେ ଶାଗପଖାଳର ଭୁଣିଆ । ଖଟୁଛନ୍ତି, କ୍ଳାନ୍ତି ନାହିଁ କି ଅଭିଯୋଗ ନାହିଁ ।

ତାଙ୍କର ଅନେକ ସାଥୀ ଗୁଣମୁଗ୍ଧ ତାଙ୍କ ଜୀବନୀ ଜୀବନ ସମ୍ପର୍କରେ ଲେଖିବେ । ଅଦ୍ୟାପି ହୋଇନଥାନ୍ତି । ତାଙ୍କୁ ଧରିଲି । ଏକ ସାକ୍ଷାତକାର ମାଗିଲି । ରାଗିଲେ ଟା, ହେଉ ମୁଁ କ'ଣ ସାକ୍ଷାତ୍କାର ଦେବି ବୋଲି ମୋତେ ଧମକାଇଲେ । ପଛକୁ ମନେଇନେଲି ସଂକ୍ଷିପ୍ତ ସାକ୍ଷାତ୍କାରର ବିବରଣୀ ନୂଆଦୁନିଆରେ ପ୍ରକାଶିତ ହୋଇଛି ।

ତାଙ୍କ ସହିତ ସ୍ୱାଧୀନତା ସଂଗ୍ରାମ କାଳରେ ଓ ପରବର୍ତ୍ତୀକାଳରେ ବହୁ ଯୋଗାଯୋଗ ସମ୍ପର୍କ ହୋଇଛି । କେତେ ଆଦର, ସ୍ନେହ ପାଇଛି । ୧୯୩୦-୩୨ର ସେ ସ୍ୱାଧୀନତା ସଂଗ୍ରାମ ! ଯେତେବେଳେ ସମ୍ପର୍କ ହୋଇଛି । ସମ୍ପର୍କ ହୁଏ ପୂର୍ବବର୍ତ୍ତୀ କାଳରେ କଂଗ୍ରେସ ସୋସାଲିଷ୍ଟ ପାର୍ଟିରେ, ସ୍ୱରାଜ ଭବନରେ, କଂଗ୍ରେସ କମିଟିଗୁଡ଼ିକର ବୈଠକବେଳେ । ଦେଖିଛି ତାଙ୍କର ସହକର୍ମୀ ଓ ନେତାମାନଙ୍କର ତାଙ୍କ ପ୍ରତି କିପରି ଶ୍ରଦ୍ଧା । ସେହି ତରକୁଣ୍ଡରେ ୧୯୩୪ରେ ସାମ୍ୟବାଦୀ କର୍ମୀ ସଂଘ ବୈଠକରେ ଅନ୍ୟତମ ଅଂଶ ଗ୍ରହଣକାରୀ । ଏହିଠାରୁ ହିଁ ସାମ୍ୟବାଦକୁ ଗ୍ରହଣ କରି, କୃଷୀ ଆନ୍ଦୋଳନ କରି ଆସନ୍ତି କମ୍ୟୁନିଷ୍ଟ ପାର୍ଟିକୁ ତାଙ୍କର ଅନେକ ସହକର୍ମୀଙ୍କ ଗହଣରେ ।

୧୯୪୦ରେ ବ୍ୟକ୍ତିଗତ ସତ୍ୟାଗ୍ରହ ଆଉ ୧୯୪୨ରେ ଅଗଷ୍ଟ ଆନ୍ଦୋଳନ । ବ୍ରହ୍ମପୁର ଜେଲରେ ଅତି ନିବିଡ଼ଭାବରେ ଏହି ବ୍ୟକ୍ତିଟି ସହିତ ଆସିବାର ସୁଯୋଗ ମିଳିଛି । ସାଧାରଣ ଜଣେ କର୍ମୀ ସେ ଥିଲେ । ସଙ୍ଗଠନର ଉଚ୍ଚପଦପଦବୀରେ ସେ ନଥିଲେ । କିନ୍ତୁ ସବୁ ମହଲରେ ତାଙ୍କ ପ୍ରତି ଆଗ୍ରହ ଶ୍ରଦ୍ଧା, ସମ୍ମାନ ତାଙ୍କର ସୁଗୁଣଗୁଡ଼ିକର ତାଙ୍କ ନୂତନ ଆଦର୍ଶର ବିରୋଧୀମାନଙ୍କ ଠାରୁ ପ୍ରଶଂସା ।

ଗତିବାବୁଙ୍କୁ ସ୍ମରଣ କଲାବେଳେ ମନେପଡ଼େ ଅନ୍ତରଙ୍ଗ ଗାନ୍ଧୀ ପୂର୍ଣ୍ଣାନନ୍ଦ ସ୍ୱାମୀ, ଶ୍ୟାମସୁନ୍ଦର ସ୍ୱାମୀ, ନୀଳକଣ୍ଠ ସାହୁ, ପୁରୁଷୋତ୍ତମ ମୁଦୁଲି, କୃପାସିନ୍ଧୁ ପଣ୍ଡା ଗୁଣନିଧି ସାହୁ, ନାରଣ ଦାସ ଏମିତି ଅନେକଙ୍କ କଥା । କାକଟପୁରରେ ପୁରୀ ମଠମହନ୍ତ ଜମିଦାର ଓ କଟକ ପ୍ରହରାଜପୁର ମିଆଁ ଜମିଦାରଙ୍କ ଅତ୍ୟାଚାର ବିରୁଦ୍ଧରେ ସେମାନଙ୍କ ସଂଗ୍ରାମର କଥା । ଗତିବାବୁ ହିଁ ଏମାନଙ୍କ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲେ । ତାଙ୍କ ବିୟୋଗରେ ତାଙ୍କର ନେତା ଓ ଅନ୍ତରଙ୍ଗ ସହକର୍ମୀ ମୋହନଦାସ ଭାଙ୍ଗି ପଡ଼ିବାର ଦେଖୁଛି ।

ଗତିବାବୁ ଗଡ଼ିଗଲେ କାକଟପୁରରେ ତାଙ୍କର ଅସରନ୍ତି କାମକୁ ତାଙ୍କ ଆଦର୍ଶ ଓ ଲକ୍ଷ୍ୟକୁ ପୂରଣ କରିବା ସଂଗ୍ରାମର ଯୋଦ୍ଧାମାନଙ୍କୁ । ସୋମନାଥ ପାତ୍ର, କେଶବ ରାଉତ, ଆଶିଷ୍ କାନୁନ୍‌ଗୋ ଏମିତି ଶହ ଶହ ସାଥୀଙ୍କୁ । ସମସ୍ତଙ୍କ ନାମ ଉଲ୍ଲେଖରୁ ବଞ୍ଚିତ ରହୁଛି—ଲେଖା ଦୀର୍ଘ ହୋଇଯିବା ଭୟରେ ।

ଗତିକୃଷ୍ଣ ସ୍ୱାଇଁ ସକଳ ଦେଶପ୍ରେମୀଙ୍କ ଲାଗି ଏବଂ କମ୍ୟୁନିଷ୍ଟମାନଙ୍କ ଲାଗି ଏକ ଉଜ୍ଜ୍ୱଳ ପରମ୍ପରା ରଖିଯାଇଛନ୍ତି । ସେହି ସାଥୀଙ୍କ ସ୍ମୃତି ପ୍ରତି ମୋର ଗଭୀର ଶ୍ରଦ୍ଧା ନିବେଦନ କରୁଛି ।

●

ଅରୁଣୋଦୟ ନଗର
କଟକ-୧୨

# ଅମୂଲ୍ୟ ସାଥୀ ଗତିବାବୁ

**● ଅଶିଷ ମହାପାତ୍ର**

କମ୍ରେଡ଼ ଗତିକୃଷ୍ଣ ସ୍ୱାଇଁ ଏକ ଅମୂଲ୍ୟ ସାଥୀ ଥିଲେ । ସେ ଥିଲେ ମଣିଷ ଭିତରେ ଏକ ହୀରା । ବହୁବିଧ ସଦ୍‌ଗୁଣ, ମାନବିକ ମୂଲ୍ୟବୋଧ ଓ ଦେଶପ୍ରେମର ସେ ଥିଲେ ଏକ ଆକର । ଗତିବାବୁ ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ, କୃଷକ ଆନ୍ଦୋଳନର ଅବିସମ୍ବାଦିତ ଯୋଦ୍ଧା ଓ ଦୁଃଖୀ ଦଳିତ ଜନସାଧାରଣଙ୍କର ସ୍ନେହଶୀଳ ବନ୍ଧୁ ଏବଂ ସେମାନଙ୍କର ଦାବୀର ପ୍ରବକ୍ତା । ତେଣୁ କାକଟପୁରର ଜନସାଧାରଣ ଓ କୃଷକକୁଳ ସ୍ନେହରେ ତାଙ୍କୁ ସର୍ଦ୍ଦାର ଗତିକୃଷ୍ଣ ରୂପେ ସମ୍ବୋଧନ କରୁଥିଲେ । ସେ ଥିଲେ ଅଜାତଶତ୍ରୁ, ସରଳ, ଅମାୟିକ ଓ ତା' ସହିତ ଅକୁତୋଭୟ ସ୍ୱଭାବର ମଣିଷ । ସେ କାଳରେ ମାଟ୍ରିକ ସମତୁଲ୍ୟ ଏଣ୍ଟ୍ରାନ୍‌ସ ପାସ କରି କଲେଜରେ ଏଫ୍. ଏ. ପଢ଼ୁଥିବା ସର୍ଦ୍ଦାର ଗତିବାବୁ ସାଧାରଣ ଚାଷୀକୁଳରେ ଜନ୍ମନେଇ ମଧ୍ୟ, ସେ କାଳରେ ଶିକ୍ଷିତ ଯୁବକ ପାଇଁ ଚାକିରି, ସୁସ୍ଥ ଜୀବନର ସମସ୍ତ ମୋହ ତ୍ୟାଗକରି ଜାତୀୟ ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ । ଦେଶକୁ ସ୍ୱରାଜ୍ୟ ଆଣିଲେ ଯଥେଷ୍ଟ ହେଲନାହିଁ, ଏହା ଉପଲବ୍ଧି କରି ସେ କୃଷକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଜମିଦାର, ମହାଜନର ଅତ୍ୟାଚାର ବିରୋଧରେ ଭାରତ ଓ ଓଡ଼ିଶାର ସଂଖ୍ୟାଗରିଷ୍ଠ ନିର୍ଯ୍ୟାତିତ ତଥା ଶୋଷିତ ଚାଷୀ—ମୂଲିଆ ଶ୍ରେଣୀର ସ୍ୱାର୍ଥ ପାଇଁ ସେ ସଙ୍ଗଠନ ଗଢ଼ିଥିଲେ । ତେଣୁ ସ୍ୱାଧୀନତାର ବହୁପୂର୍ବରୁ ଏହି ଆଭିମୁଖ୍ୟ ତାଙ୍କୁ କୃଷକ ସଭା ଓ କମ୍ୟୁନିଷ୍ଟ ଆନ୍ଦୋଳନ ପାଇଁ ଅନୁପ୍ରେରିତ କରିଥିଲା । ଚାଷୀ ଓ ମୂଲିଆର ଭାଗ୍ୟ ନବଦଳିଲେ, ଦେଶର ପ୍ରଗତି ଅସମ୍ଭବ, ଏକଥା ଥିଲା ଗତିବାବୁଙ୍କ ଚିନ୍ତା ତଥା ଚେତନାର ମୂଳମନ୍ତ୍ର । ସେ ସାମ୍ରାଜ୍ୟବାଦର ବିରୋଧୀତାର ରାସ୍ତାରେ ପଥୀକୃତ ହୋଇ ଦେଶ ଭିତରୁ ଶୋଷଣ-କଷଣ, ଅତ୍ୟାଚାରର କାରଣ ଦୂର କରିବାକୁ ଅଣ୍ଟାଭିଡ଼ି ବାହାରିଥିଲେ । ତାଙ୍କର ପ୍ରେରଣାରେ ତାଙ୍କର ପ୍ରିୟ ଗ୍ରାମ ପାଟପୁରରେ ଏକନିଷ୍ଠ ଏକତାର ପ୍ରତୀକ ଓ ଜନମଙ୍ଗଳକାରୀ ସଂସ୍ଥା ଗ୍ରାମ କମିଟି ଗଠିତ ହୋଇଥିଲା ।

ଲବଣ ସତ୍ୟାଗ୍ରହଠାରୁ ଆରମ୍ଭ କରି, ଜାତୀୟ ଆନ୍ଦୋଳନର ବିଭିନ୍ନ ଲଢ଼େଇରେ ସେ ଝାସ ଦେଇଥିଲେ । ଦେଶ ସ୍ୱାଧୀନତା ପାଇବାବେଳକୁ ଗତିବାବୁ ଜାଣିଥିଲେ ଯେ ଅର୍ଥନୈତିକ ସ୍ୱାଧୀନତା ବିନା ଆଜାଦୀର ଅର୍ଥ ସଂପୂର୍ଣ୍ଣ ନୁହେଁ । ତେଣୁ ସ୍ୱାଧୀନତାର ପ୍ରାପ୍ତିର ପୂର୍ବରୁ ଓ ପରବର୍ତ୍ତୀ କାଳରେ ସେ ଚାଷୀର ହକ୍ ପାଇଁ, ଜମି ଉପରେ ତାର ମାଲିକାନା ସତ୍ତ୍ୱପାଇଁ, କ୍ଷେତ ମଜୁରିଆର ମଜୁରି ପାଇଁ ସେ ବାଧାବିଘ୍ନକୁ ଖାତିର ନକରି ସଂଗ୍ରାମରତ ଥିଲେ ।

ସାମ୍ୟବାଦୀ ଦର୍ଶନର ଉଦ୍ଦାମ ବିଚାରଧାରାରେ ସେ ନିଜକୁ ଅଭିମନ୍ତ୍ରିତ କରିଥିଲେ । ତାଙ୍କର ଚାଷୀ ସୁଲଭ ସରଳତା ପଛରେ ଏକ ବିଶ୍ୱବିପ୍ଳବର ପ୍ରଚଣ୍ଡ ଭାବଧାରା ସଂଚାଳିକା ଶକ୍ତି ଭାବେ କାର୍ଯ୍ୟ କରୁଥିଲା ।

ସ୍ୱାଧୀନତା ପରେ ମେହନତି ଜନସାଧାରଣଙ୍କର ସଂଗ୍ରାମର ବାର୍ତ୍ତାକୁ ପୁରୀଜିଲ୍ଲା ଓ କାକଟପୁର ଅଞ୍ଚଳରେ କେବଳ ପହଞ୍ଚାଇନଥିଲେ, ସେଥିପାଇଁ କାରାବରଣ କରିଥିଲେ ଓ କାରାକଷଣ ବରଣ କରିଥିଲେ ।

କମ୍ୟୁନିଷ୍ଟ ଜୀବନରେ ମତାନ୍ଧତା ବା ଶତ୍ରୁ ସହିତ ସାଲିସ ମନୋଭାବ କେବେ ତାଙ୍କୁ ସ୍ପର୍ଶ କରିନଥିଲା । ମାତ୍ର ସେଥିରେ ବ୍ୟକ୍ତିଗତ ବୈରତା ନଥିଲା ।

ଗତିବାବୁଙ୍କ ବ୍ୟକ୍ତିତ୍ୱର ବିଶେଷତ୍ୱ ଥିଲା, ଯେଉଁମାନେ ତାଙ୍କର ଚିନ୍ତାଧାରା ଓ ଆଦର୍ଶର ବିରୋଧ କରୁଥିଲେ, ସେମାନେ ଗତିବାବୁଙ୍କୁ ଅଶେଷ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ସେ ବିଧାନସଭାର ସଦସ୍ୟ ହୋଇଥିଲେ । ମାତ୍ର ପଦଭାର ଆଟୋପ, ସ୍ପର୍ଦ୍ଧା ଓ ଅହଙ୍କାର ତାଙ୍କ ପାଖ ମାଡ଼ିନଥିଲା । ଆତ୍ମସ୍ୱାର୍ଥଠାରୁ ଓ ଆତ୍ମପ୍ରଚାର—ବିଜ୍ଞାପନର ସେ ଘୋର ବିରୋଧୀ ଥିଲେ । ଏକ ନିସ୍ୱାର୍ଥପର—ନିରହଙ୍କାରୀ ମଣିଷ ଥିଲେ ଗତିକୃଷ୍ଣ ସ୍ୱାଇଁ ।

ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ପୂର୍ବ ୟୁରୋପ ଓ ସୋଭିଏତ୍ ରାଷ୍ଟ୍ରର ପଶ୍ଚାତଗତି ତାଙ୍କୁ ବିଚଳିତ କରିଥିଲା, ମାତ୍ର ତାଙ୍କର ଏହି ମହାନ୍ ସାମ୍ୟର ଦର୍ଶନ ଓ କାର୍ଯ୍ୟକ୍ରମଠାରୁ ତିଳେ ମାତ୍ର ବିଚ୍ୟୁତ କରି ନଥିଲା । ତାର ପଛରେ ଥିଲା ତାଙ୍କର ଅଗାଧ ଧୈର୍ଯ୍ୟଶୀଳ ଚିନ୍ତାଧାରା ଓ ସାମ୍ୟବାଦୀ ବିଶ୍ୱ ଦୃଷ୍ଟିକୋଣ । ସ୍ନେହ, ଶ୍ରଦ୍ଧା, ଦରଦ, ଭ୍ରାତୃତ୍ୱ ଦୟା ଓ ତିତିକ୍ଷାର ସେ ଥିଲେ ମୂର୍ତ୍ତିମନ୍ତ ଅବତାର । ସେ ସାଧାରଣରେ ଥିଲେ ଅସାଧାରଣ । ମୁଁ ବୟସରେ ତାଙ୍କର ପୁତ୍ର ତୁଲ୍ୟ । ସେ ମୋର ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ ପିତାଙ୍କର ଥିଲେ ସମଯୋଦ୍ଧା । ଯେତେବେଳେ ତାଙ୍କୁ ଭେଟିଛି, ସେ ବହୁବିଧ ବିଶ୍ୱ ଓ ଜାତୀୟ ସମସ୍ୟା ଉପରେ ଜଳ୍ପନା କରନ୍ତି । ସେ ଥିଲେ ଜନଗଣଙ୍କ ପାଠଶାଳୀର ଛାତ୍ର । ସେହିମାନଙ୍କ ସୁଖ, ଦୁଃଖ, ସମସ୍ୟା ଓ ସଂଗ୍ରାମରୁ ଶିକ୍ଷା ଗ୍ରହଣ କରିଥିଲେ ଏବଂ ପରବର୍ତ୍ତୀ ସଂଗ୍ରାମରେ ତାକୁ ପାଥେୟ କରି ଆଗେଇଥିଲେ । ସେ କେବେ ରାଗୁ ନଥିଲେ । ମାତ୍ର ଶୋଷଣ, ଅତ୍ୟାଚାର ବିରୋଧରେ ତାଙ୍କର ରୋଷ ଥିଲା ତୀବ୍ର । ଲୋଭ, କ୍ଷୁଦ୍ରତା, ଆତ୍ମଶ୍ଳାଘତା ତାଙ୍କୁ ସ୍ପର୍ଶ କରିନଥିଲା ।

ତାଙ୍କର ଜୀବନର ବହୁ ଛାତ୍ର ପ୍ରତ୍ୟେକ ବିପ୍ଳବୀଙ୍କୁ ରାସ୍ତା ଦେଖାଇବ । ଦୁନିଆରେ ଆଜି ସମାଜବାଦୀ ଆନ୍ଦୋଳନର ସାମୟିକ ପଶ୍ଚାତ୍‌ଗତିର କାଳରେ, ବର୍ଣ୍ଣ ବୈଷମ୍ୟ, ଦାସତ୍ୱ ଓ ଶୋଷଣ ସପକ୍ଷରେ ଓ ସାମ୍ୟ, ନ୍ୟାୟ ଓ ମୁକ୍ତି ବିରୋଧରେ ପ୍ରଚାର ଚଳାଇଛନ୍ତି । ହଁ, ଗୋଟିଏ ରାଷ୍ଟ୍ରର ବିଦ୍ୟମାନ ଅବସ୍ଥାରେ ଗଣତାନ୍ତ୍ରିକ ପରିବର୍ତ୍ତନ ପାଇଁ ବ୍ୟକ୍ତିଗତ ପୁଞ୍ଜିକୁ କିଛିଦିନ ପାଇଁ ରଖାଯାଇପାରେ । ମାତ୍ର ସମତା, ଜନସାଧାରଣଙ୍କର ଉତ୍ପାଦନ ଯନ୍ତ୍ର ଉପରେ ଅଧିକାର ଓ ମଣିଷ ଦ୍ୱାରା ମଣିଷର ଶୋଷଣର ବିଲୋପର ଧାରା ସେ ବୈଠିକ୍, ଭୁଲ ଓ ଅଗ୍ରହଣୀୟ ତାକୁ କୌଣସି ପରିବର୍ତ୍ତନକାମୀ ବିପ୍ଳବୀ ଗ୍ରହଣ କରିପାରିବ ନାହିଁ । ଗତିବାବୁ ନିଜ ଜୀବନର ଶେଷ ସମୟରେ ସଜ୍ଞାନ ଥିବାବେଳେ ମଧ୍ୟ ମୁକ୍ତି, ସାମ୍ୟ ଓ ବିଶ୍ୱ ଭ୍ରାତୃତ୍ୱର ଚିନ୍ତାଧାରା ଉପରୁ ବିଶ୍ୱାସ ହରାଇ ନଥିଲେ । ଆଗାମୀ କାଲି ଆସୁଥିବା ପ୍ରଚଣ୍ଡ ଝଡ଼ ଭିତରେ ତାଙ୍କର ଜୀବନର ନିଦର୍ଶନ ଦେଖାଇବ ଆଲୋକର ରେଖା । ଗତିବାବୁଙ୍କୁ ସ୍ମରଣ କରି ସାଥୀ ଦମ୍ଭଧରି ଠିଆହୁଅ, ସଂଗ୍ରାମରେ ଠିକ୍ ତାଙ୍କପରି ଅକୁତୋଭୟ ଓ ଅବିଚଳ ରହି ଆଗେଇଯାଅ । ତାହାହେବ ମହାନ୍ ସାଥୀ ଗତିକୃଷ୍ଣ ସ୍ୱାଇଁଙ୍କ ପ୍ରତି ଯଥାର୍ଥ ଶ୍ରଦ୍ଧାଞ୍ଜଳି ।

—o—

# ପାର୍ଟି ସିଦ୍ଧାନ୍ତ ମାନିବାକୁ ହେବ

● ମୋହନ ଦାସ

ଗଣ୍ଡବାବୁଙ୍କ ପାଇଁ ବିସ୍ତୃତଭାବେ ଲେଖିବାକୁ ମୋର ବଳ ପାଉନାହିଁ । ତେଣୁ ସଂକ୍ଷେପରେ ଲେଖୁଛି ।

ସର୍ଦ୍ଦାର ଗଣ୍ଡକୃଷ୍ଣ ସ୍ୱାଇଁ ସ୍ମରଣୀୟ ହୋଇ ରହିବେ । ତାଙ୍କ ବିଷୟରେ ମୁଁ ଗୋଟିଏ ଘଟଣା କହିବି ଯେଉଁଥିରୁ ତାଙ୍କର ମହାନ୍ ଓ ନିର୍ମଳ ଚରିତ୍ର ବୁଝାପଡ଼ିବ । ଆଜିକାଲି ରାଜନୈତିକ ଦଳର କର୍ମୀ ଓ ନେତାମାନେ ପଦ ପଦବୀ, ଧନ ଓ କ୍ଷମତା ପଛରେ ଦୌଡ଼ୁଛନ୍ତି । ରାଜନୀତି ଏକ ବେଶ୍ୟାବୃତ୍ତିରେ ପରିଣତ ହେଲାଣି । କିନ୍ତୁ ମୋର ବନ୍ଧୁ ଗଣ୍ଡବାବୁ ଏ ସବୁର ଊର୍ଦ୍ଧ୍ୱରେ ଥିଲେ । କାକଟପୁର ନିର୍ବାଚନ ମଣ୍ଡଳୀରୁ ଗଣ୍ଡବାବୁଙ୍କୁ ବିଧାନ ସଭାକୁ ପ୍ରାର୍ଥୀ ଭାବରେ ଠିଆ କରିବାକୁ ସିଦ୍ଧାନ୍ତ ନେଲା କମ୍ୟୁନିଷ୍ଟ ପାର୍ଟି । ରାମଚନ୍ଦ୍ର, ଗୁରୁଚରଣ ପଟ୍ଟନାୟକ, ଦୁର୍ଗା ମହାନ୍ତି ସମସ୍ତେ ଗଣ୍ଡବାବୁଙ୍କୁ ପ୍ରାର୍ଥୀ ହେବାକୁ ରାଜି କରାଇ ନପାରି ମୋ ପାଖରେ ଆସି ପହଞ୍ଚିଲେ ଓ ଗଣ୍ଡବାବୁଙ୍କୁ ରାଜି କରାଇବାକୁ ମୋତେ ସାଙ୍ଗରେ ନେଲେ । ମୁଁ ତାଙ୍କୁ କିଛି ନ କହି କେବଳ ଧମକ ଦେଲି "ଗଣ୍ଡବାବୁ ! ପାର୍ଟି ସିଦ୍ଧାନ୍ତ ନ ମାନିଲେ ପାର୍ଟିରୁ ନିକାଲି ଦେବେ, ଜାଣିଛତ ?" ଏ କଥାରେ ଗଣ୍ଡବାବୁ କିଛି ସମୟ ମୂକ ହୋଇ ଶେଷରେ କାନ୍ଦିକରି କହିଥିଲେ "ହଉ ପ୍ରାର୍ଥୀ ହେବି ।"

ଧନ୍ୟ ଗଣ୍ଡବାବୁ ।

—o—

# ଗତିବାବୁଙ୍କ ଅମ୍ଳାନ ସ୍ମୃତିରୁ ଖିଏ

● ଶମ୍ଭୁନାଥ ସାହୁ

ତତ୍କାଳୀନ ବିଖଣ୍ଡିତ ଓଡ଼ିଶା ଜାତୀୟ ଆନ୍ଦୋଳନର ଅଗ୍ନିଗର୍ଭ ଭିତରୁ ଜାତୀୟ ମୁକ୍ତି ଆନ୍ଦୋଳନ ପ୍ରଭାବିତ ହୋଇ ବ୍ୟାପକ ରୂପ ଧାରଣ କଲା । ବର୍ତ୍ତମାନର ଓଡ଼ିଶା ରାଜ୍ୟଖଣ୍ଡ ବିଖଣ୍ଡିତ ହୋଇ ମାନ୍ଦ୍ରାଜ, ବିହାର, ବଙ୍ଗ ଓ ସି.ପି— ବେରାର ରାଜ୍ୟ ସହ ସାମିଲ ହୋଇ ରହିଥିଲା । ଓଡ଼ିଆଙ୍କ ପାଇଁ ସ୍ୱତନ୍ତ୍ର ରାଜ୍ୟ କିଛି ନଥିଲା । ଏଣୁ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ଉତ୍କଳ ରାଜ୍ୟ ଗଠନ କରିବା ପାଇଁ ତତ୍କାଳୀନ ଓଡ଼ିଆ ପ୍ରେମୀ ନେତୃବର୍ଗ ସଂଘବଦ୍ଧ ହେଲେ । ଏହି ଜାତୀୟ ଆନ୍ଦୋଳନର ପୁରୋଭାଗରେ ଦେଶପ୍ରାଣ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ବ୍ୟାସକବି ଫକୀର ମୋହନ, ରାଜା ହରିହର ମର୍ଦ୍ଦରାଜ, ଗଜପତି କୃଷ୍ଣଚନ୍ଦ୍ର ପ୍ରମୁଖ ନେତୃବର୍ଗ ରହିଥିଲେ । ପ୍ରବଳ ପରାକ୍ରମୀ ଓଡ଼ିଆ ଜାତି ଏକାଠି ନରହି ଖଣ୍ଡ ଖଣ୍ଡ ହୋଇ ରହିଲେ ଶାସକ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗଠିତ ସଂଗ୍ରାମ କରିବା ଦୁରୁହ ବ୍ୟାପାର ମନେକରି ଗୋରା ଶାସନ ଏହା କରିଥିଲେ । ନିଜ ଭାଷା ଓ ସଂସ୍କୃତିର ବିକାଶ ଓ ପରିପ୍ରକାଶ କରିବା ପାଇଁ 'ଭାଷା ସୂତ୍ରରେ ପ୍ରଦେଶ ଗଠନର ଦୃଷ୍ଟିକୋଣ ନେଇ ଉତ୍କଳୀୟ ନେତୃବୃନ୍ଦ 'ଉତ୍କଳ ସମ୍ମିଳନୀ' ଗଠନ କଲେ ।

ଉତ୍କଳର ଏହି ଜାତୀୟ ମହାସ୍ରୋତରେ ସମସ୍ତ ଉତ୍କଳୀୟ ଏକତ୍ରିତ ହେବାକୁ ଲାଗିଲେ । ରାଜା ମହାରାଜାଙ୍କଠାରୁ ଆରମ୍ଭ କରି କୃଷକ, ଶ୍ରମିକ, ଛାତ୍ର ବୁଦ୍ଧିଜୀବୀ ସମସ୍ତଙ୍କ ମହାମିଳନର ପୀଠ ହେଲା—"ଉତ୍କଳ ସମ୍ମିଳନୀ ।" ଏହା ବିଧିବଦ୍ଧ ଭାବେ ସଂଗଠିତ ରୂପ ନେଲା—ତତ୍କାଳୀନ ଗଞ୍ଜାମ [ବର୍ତ୍ତମାନର ଗଞ୍ଜାମ, ଗଜପତି, ଫୁଲବାଣୀ, (ବଉଦ ବ୍ୟତୀତ) ଓ ଆନ୍ଧ୍ରରେ ଥିବା ଶ୍ରୀକାକୁଲମ] ଜିଲ୍ଲାର ରମ୍ଭା ସହରରେ ୧୯୦୩ ସାଲରେ ।

ସେତେବେଳକୁ ଜାତୀୟ ମୁକ୍ତି ଆନ୍ଦୋଳନ ଅଙ୍କୁରିତ ହୋଇ ପ୍ରଖରରୁ ପ୍ରଖରତର ହେଲା । ଦେଶର ମହାନ ଜାତୀୟ ମୁକ୍ତି ଆନ୍ଦୋଳନ ଭିତରେ ଉତ୍କଳୀୟ ବା ଓଡ଼ିଆ ଭାଷାଭାଷୀମାନଙ୍କୁ ସାମିଲ କରିବାକୁ ହେଲେ ସେମାନଙ୍କ ଦାବୀ— "ଭାଷା ସୂତ୍ରରେ ପ୍ରଦେଶ ଗଠନ"କୁ ଜାତୀୟ କଂଗ୍ରେସ ଗ୍ରହଣ କଲା ।

ଏହି ମହାନ ଜାତୀୟ ମୁକ୍ତି ଆନ୍ଦୋଳନର ସ୍ରୋତ ମଝିରେ ଉତ୍କଳମଣି ଗୋପବନ୍ଧୁ ପ୍ରମୁଖ ଉତ୍କଳୀୟ ନେତୃବର୍ଗ ଝାସ ଦେଲେ । ଦୁଃଖିନୀ ଓଡ଼ିଶାର ବ୍ୟାକୁଳ କ୍ରନ୍ଦନ, ବନ୍ୟା ମରୁଡ଼ିର କରୁଣକ୍ରନ୍ଦନ ଓଡ଼ିଆ ଜାତିକୁ ଅସ୍ଥିର କରିଥାଏ । ସେଥିରେ ଦୀନବନ୍ଧୁ ଗୋପବନ୍ଧୁ ବନ୍ୟା ତାଡ଼ିରୁ ଲୋକଙ୍କୁ ବଞ୍ଚାଇବା ଓ ଥଇଥାନ କରିବା ଲାଗି ଦିନ ରାତି ଅହର୍ନିଶି ଜୀବନ ଢ଼ାଳି ଦେଇଥାନ୍ତି । ଏପରି ଦୁର୍ଦ୍ଦିନରେ ଗୋପବନ୍ଧୁଙ୍କ ଯୁବଶକ୍ତିକୁ ଆହ୍ୱାନ—"ଦେଶପାଇଁ ଜୀବନ ଢ଼ାଳିଦିଅ ।" ଗୋପବନ୍ଧୁଙ୍କ ମର୍ମସ୍ପର୍ଶୀ ବାଣୀ ଛାତ୍ର ଗତିକୃଷ୍ଣଙ୍କ କର୍ଣ୍ଣ ଭେଦକରି ଅସ୍ଥିର କରିଦେଲା । ପାଠ ପଢ଼ି ବଡ଼ ଚାକିରୀ କରିବା, ବ୍ରିଟିଶ ଶାସନରେ ଗୋଲାମ ସାଜି ଅର୍ଥ ଉପାର୍ଜନ କରିବାଠାରୁ ଦୀନ-ହୀନ ବନ୍ୟାକ୍ରାନ୍ତ ଲୋକଙ୍କ ପ୍ରାଣରକ୍ଷା କରିବା ଓ ଦେଶର ସ୍ୱାଧୀନତା ଆନ୍ଦୋଳନ ଯଜ୍ଞରେ ନିଜକୁ ଆହୂତି ଦେବାପାଇଁ ଗତିକୃଷ୍ଣ ରେଭେନ୍ସା କଲେଜ ତ୍ୟାଗ କଲେ । ଗୋପବନ୍ଧୁ ଦାସଙ୍କ ସହ କଟକ, ବାଲେଶ୍ୱର ଅଞ୍ଚଳରେ ବନ୍ୟା ପ୍ରପୀଡ଼ିତଙ୍କୁ ସାହାଯ୍ୟ କାର୍ଯ୍ୟରେ ଲାଗିପଡ଼ିଲେ ।

୧୯୧୭ ସାଲ, ଅକ୍ଟୋବର ବିପ୍ଳବ-ତତ୍କାଳୀନ ସୋଭିୟତ ୟୁନିୟନ ବା ରୁଷ ଦେଶରେ ନୂତନ ସୂର୍ଯ୍ୟୋଦୟ ହେଲା । ଏହାର ସୁଦୂରପ୍ରସାରୀ ପ୍ରଭାବ ଦୁନିଆର ସମସ୍ତ ପରାଧୀନ ଦେଶର ଜନସାଧାରଣ, ଶ୍ରମିକଶ୍ରେଣୀ ବିଶେଷ କରି ମେହନତୀ ଜନସାଧାରଣଙ୍କୁ ଆକୃଷ୍ଟ କଲା । ଆମ ସୁଜଳା ସୁଫଳା ଭାରତବର୍ଷ ଅଲଗା ରହିବ କିପରି ? ଭାରତର ସ୍ୱାଧୀନତା ଆନ୍ଦୋଳନକୁ ପ୍ରଭାବିତ କଲା; ମୁକ୍ତି ଆନ୍ଦୋଳନ ନୂତନ ମୋଡ଼ ନେଲା । ଦେଶରେ ସ୍ୱାୟତ୍ତ ଶାସନ ଦାବୀ ପରିବର୍ତ୍ତେ ସଂପୂର୍ଣ୍ଣ ସ୍ୱରାଜ ଦାବୀ ଉଠିଲା । ପ୍ରଗତିକାମୀ ବାମପନ୍ଥୀମାନେ ସାମ୍ରାଜ୍ୟବାଦ ବିରୁଦ୍ଧରେ ସାଲିସ୍‌ହୀନ ସଂଗ୍ରାମ ପାଇଁ ଆହ୍ୱାନ ଦେଲେ ।

ଦେଶର ଏହି ମହାନ ସ୍ରୋତ ଭିତରୁ ଉତ୍କଳ ଭୂଖଣ୍ଡ ବାଦ ପଡ଼ନ୍ତା କିପରି ? ଏଠାରେ ମଧ୍ୟ ସ୍ୱରାଜ ଆନ୍ଦୋଳନ ତୀବ୍ରତର ହେଲା । ଲୁଣମରା ଆନ୍ଦୋଳନଠାରୁ ଆରମ୍ଭ କରି ବିଦେଶୀ ଜିନିଷ ବର୍ଜନ, ବିଦେଶୀ ଲୁଗା ବର୍ଜନ ଓ ପୋଡ଼ି, ଅଫିମ,

ରସ୍ତା, ମଦ ଦୋକାନ ଆଗରେ ପିକେଟିଂ, 'ହାତେ ବୁଣି କୁଟି ଖାଅ' ଡାକରା ପ୍ରଭୃତି ପୁରପଲ୍ଲୀର ଜନସାଧାରଣଙ୍କ ମନରେ ଉଦ୍‌ବେଳନ ସୃଷ୍ଟି କଲା ।

ଏହି ସମସ୍ତ ସଂଗ୍ରାମ ଭିତରୁ ଯେଉଁ କେତେ ଜଣ ବୀର ଯୁବକ ନିଜର ଜୀବନକୁ ଉତ୍ସର୍ଗ କରି ଦେଶମାତୃକାର ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ ସେମାନଙ୍କ ମଧ୍ୟରେ ଗତିକୃଷ୍ଣ ସ୍ୱାଇଁ ଅନ୍ୟତମ । ସେ ପୁଣ୍ୟାତ୍ମା ଗୋପବନ୍ଧୁ ଓ ଗାନ୍ଧିଜୀଙ୍କ ଆହ୍ୱାନରେ ରେଭେନ୍‌ସା କଲେଜ ତ୍ୟାଗ କରି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦେଲେ । ଗାଁ ଗାଁ ବୁଲି ସତ୍ୟାଗ୍ରହୀ ସୃଷ୍ଟି କଲେ । ଅସ୍ତରଙ୍ଗଠାରେ ସମୁଦ୍ର ପାଣିରୁ ଲୁଣ ମାରିବା ପାଇଁ ପୋଲିସର ଲାଠି ବନ୍ଧୁକକୁ ଭ୍ରୂକ୍ଷେପ ନକରି ଶହ ଶହ ଲୋକଙ୍କୁ ନେଇ ଲୁଣମାରିବା ଯୋଗୁଁ ଗିରଫ ହେଲେ । ବ୍ରିଟିଶର ବନ୍ଧୁକମୁନ ଓ ଲାଠି ପ୍ରହାରକୁ ଭ୍ରୂକ୍ଷେପ ନକରି ଲୁଣମରା ଆନ୍ଦୋଳନରେ ଝାସ ଦେଇଥିବା ଯୋଗୁଁ ଜାତୀୟ ନେତାମାନେ ତାଙ୍କୁ ସର୍ଦ୍ଦାର ପଦବୀରେ ଭୂଷିତ କରିଥିଲେ । ସେହି ଦିନରୁ ସେ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ନାମରେ ଜନାଦୃତ ।

ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ ହେଲେ ସେ କଂଗ୍ରେସ ସଂଗଠନ ମଧ୍ୟରେ ନିଜକୁ ସୀମିତ ରଖି ପାରିଲେ ନାହିଁ । ରାଜା ମହାରାଜା-ଜମିଦାରମାନଙ୍କ ଅତ୍ୟାଚାର, ପ୍ରଜାପୀଡ଼ନ ତାଙ୍କୁ ଅସହ୍ୟ କରିପକାଉ ଥାଏ । ସେତିକବେଳେ ସୋଭିଏତର ସମାଜବାଦୀ ବିପ୍ଳବ ଏବଂ ଶ୍ରମ, କୃଷକ, ମେହନତୀ ଜନସାଧାରଣଙ୍କ ଉପରେ ତାର ଫଳକ ସମାଜବାଦ ପଥ ତାଙ୍କୁ ବିଶେଷ ଆକୃଷ୍ଟ କରିବାକୁ ଲାଗିଲା । 'ବେଠି ବେଗାରୀ ଲୋପକର, ମଠଧନ କୋଠ ହେଉ, ଲଙ୍ଗଳ ଯାର—ଜମି ତାର' ଆଦି ବାମପନ୍ଥୀ ସ୍ଲୋଗାନ ସର୍ଦ୍ଦାର ଗତିକୃଷ୍ଣଙ୍କୁ ବିଶେଷ ପ୍ରଭାବିତ କଲା । ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ତାଙ୍କର ସମସାମୟିକ ସହକର୍ମୀ ପୂର୍ଣ୍ଣାନନ୍ଦ ସ୍ୱାଇଁ, ସାଧୁଚରଣ ମହାନ୍ତି, ପ୍ରାଣନାଥ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ, ଗୋକୁଳ ମୋହନ ରାୟଚୂଡ଼ାମଣି, ମୋହନ ଦାସ, ଘନଶ୍ୟାମ ଦାସ, ଗଙ୍ଗାଧର ମିଶ୍ର ଗୁରୁଚରଣ ପଟ୍ଟନାୟକ, ଗଙ୍ଗାଧର ପାଇକରାୟ ପ୍ରମୁଖଙ୍କ ସହ—ଯୋଦ୍ଧା ଭାବରେ ବ୍ରିଟିଶ୍ ଶାସନ ବିରୁଦ୍ଧରେ ସଂଗ୍ରାମ କରି ବହୁବାର ଜେଲ୍ ବରଣ କଲେ ।

୧୯୪୭ ଅଗଷ୍ଟ ମାସରେ ଦେଶ ସ୍ୱାଧୀନ ହେଲା ସତ କିନ୍ତୁ ସ୍ୱାଧୀନତାର ସ୍ୱାଦ ଦେଶବାସୀ ପାଇଲେ ନାହିଁ । ଏଣୁ ସଂଗ୍ରାମ ଚାଲୁରହିଲା ।

ଭାରତବର୍ଷ, ଏଥିରେ ଆମର ଓଡ଼ିଶାରେ ଶତକଡ଼ା ୮୦ ଭାଗ ହେଉଛନ୍ତି—କୃଷକ ଓ କୃଷି ଶ୍ରମଜୀବୀ । ତେଣୁ ସେ କୃଷକମାନଙ୍କୁ ସମସ୍ତ ରକମ ଶୋଷଣର ନାଗପାଶରୁ ମୁକ୍ତ କରିବା ପାଇଁ କୃଷକମାନଙ୍କୁ ସଙ୍ଗଠିତ କରିବାକୁ ଲାଗିଲେ । ଶ୍ରେଣୀକୁ ସାମ୍ରାଜ୍ୟବାଦୀ ଓ ପୁଞ୍ଜିବାଦୀ ଶୋଷଣରୁ ମୁକ୍ତ କରି ଏକ ଶୋଷଣହୀନ ସମାଜ ଗଠନ କରିବା ଦିଗରେ ଗଢ଼ିବାକୁ ପ୍ରୟାସୀ ହେଲେ । ବହୁବର୍ଷ ଧରି ସେ ପୁରୀଜିଲ୍ଲା କୃଷକ ସଭାର ସଭାପତି ରହି କୃଷକମାନଙ୍କୁ ସଙ୍ଗଠିତ କରିଥିଲେ । ସେ ଶେଷ ନିଶ୍ୱାସ ତ୍ୟାଗଯାଏଁ ଉତ୍କଳ ରାଜ୍ୟ କୃଷକ ସଭାର ସଭାପତି ଥିଲେ । ତାଙ୍କର ଆଦର୍ଶ, ବ୍ୟବହାର ଶୃଙ୍ଖଳିତ ଜୀବନ, ଗ୍ରାମ ସଙ୍ଗଠନ ଓ କାର୍ଯ୍ୟର ଧାରା ବହୁବର୍ଷ ଧରି ତାଙ୍କର ସହକର୍ମୀମାନଙ୍କୁ ଅନୁପ୍ରାଣିତ କରି ରଖିବ । ତାଙ୍କର ଦୀର୍ଘ ଦିନର ସହକର୍ମୀ ହିସାବରେ ଯେଉଁମାନେ କାମ କରିଆସିଛନ୍ତି ସେମାନେ ତାଙ୍କର ଗ୍ରାମ ସଙ୍ଗଠନ, ଶିକ୍ଷାର ପ୍ରଚାର, ଗ୍ରାମ୍ୟ ଏକତା ଗଠନ ପ୍ରଭୃତି ଦିଗ ପ୍ରତି ନିଃସନ୍ଦେହଭାବେ ଜନମାନସରେ ନୂତନ ଆଲୋକପାତ କରିଥିବା ଜାଣନ୍ତି । ଗାଁ ବିବାଦ ଗାଁରେ ମୀମାନ୍‌ସା କରିବା ଶୈଳୀ ଗତିବାବୁଙ୍କର ଏକ ବିରାଟ ବ୍ୟକ୍ତିତ୍ୱର ପରିଚୟ ଦିଏ । କମ୍ୟୁନିଷ୍ଟ ଆନ୍ଦୋଳନରେ ବିଭେଦ ଏବଂ ପରିଶେଷରେ କମ୍ୟୁନିଷ୍ଟ ପାର୍ଟି ଭାଗ ଭାଗ ହେବା ତାଙ୍କୁ ବ୍ୟଥିତ କରିଥିବା ମୁଁ ଜାଣେ । ସେ ସବୁବେଳେ ପାର୍ଟିର ଏକତା ଓ ଶୃଙ୍ଖଳାକୁ ସର୍ବାଗ୍ରେ ଧ୍ୟେୟ କରୁଥିଲେ ।

ସେ ଆଜି ନାହାନ୍ତି— ମାତ୍ର ତାଙ୍କର ଜୀବନର ଶୂନ୍ୟତା ଆଜି ପୂରଣ ହୋଇପାରି ନାହିଁ—କିନ୍ତୁ ତାଙ୍କର ବିରାଟ ବ୍ୟକ୍ତିତ୍ୱ ଅମ୍ଳାନ ନେତୃତ୍ୱ ଜନମାନସରେ ଲିପିବଦ୍ଧ ହୋଇରହିଛି—ଯାହାକି ଆଗାମୀ ଦିନ ପାଇଁ ଆଗାମୀ ଆନ୍ଦୋଳନ ପାଇଁ ପଥ ପରିସ୍ଫୁଟ କରିବ । ତାଙ୍କର ଶ୍ରାଦ୍ଧବାର୍ଷିକୀରେ ଆମର ପ୍ରଣତି ଜଣାଉଛୁ ।



# ଗତିବାବୁଙ୍କ ସହ ଜେଲ—ସାନିଧ

● ଡଃ ଲକ୍ଷ୍ମୀନାରାୟଣ ରାୟସିଂହ

ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ—ବହୁ ତ୍ୟାଗୀ ଜନନେତା, ସାଧକ, ନୈତିକ ବଳରେ ବଳୀୟାନ ବ୍ୟକ୍ତିଙ୍କୁ ସୃଷ୍ଟି କରିଥିଲା । ସେହିମାନେ ହିଁ ସ୍ୱାଧୀନତା ଆନ୍ଦୋଳନକୁ ଆଗେଇ ନେଇଥିଲେ । ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ବହୁ ପ୍ରତିଭାବନ୍ତ ବ୍ୟକ୍ତି ନିସ୍ୱାର୍ଥପର ଭାବରେ ଏହି ମହାନ ଦେଶସେବାରେ ନିଜକୁ ନିୟୋଜିତ କରିଥିଲେ । ସାମାଜିକ ପରିବର୍ତ୍ତନ ପାଇଁ ନାନା କୁସଂସ୍କାରଗ୍ରସ୍ତ ମଣିଷଙ୍କୁ ଏକାଠି କରି ରାଜନୈତିକ ଓ ଅର୍ଥନୈତିକ ଲଢ଼େଇ ପାଇଁ ପ୍ରସ୍ତୁତ କରିବାରେ ସେମାନେ ନିଜର ଜୀବନକୁ ଉତ୍ସର୍ଗ କରି ଯାଇଛନ୍ତି ।

ସେହିପରି ଜଣେ ବ୍ୟକ୍ତି ଥିଲେ ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ । କାକଟପୁରର ଗ୍ଲେଟ ଗାଁ । ପାଟପୁରର ଗତିକୃଷ୍ଣ ଏହି ଆନ୍ଦୋଳନରେ ନିଜକୁ ଏପରି ଏକ ଦୃଢ଼ତାରେ ପ୍ରତିଷ୍ଠିତ କରାଇ ନେଇଥିଲେ ଯେ ଶେଷରେ ଅହିଂସା ସତ୍ୟାଗ୍ରହର ନେତୃତ୍ୱ ନେଇ ଏକଦା ତାଙ୍କୁ ସର୍ଦ୍ଦାର ଭାବେ ଦାୟିତ୍ୱ-ବହନ କରିବାକୁ ପଡ଼ିଥିଲା । ସେହିଦିନଠାରୁ ସେହି ପଦବୀରେ ସେ ପରିଚିତ ଥିଲେ ଜୀବନର ଶେଷ ପର୍ଯ୍ୟନ୍ତ ।

ସେ ଥିଲେ ରାଜନୈତିକ କ୍ଷେତ୍ରରେ ଯୁକ୍ତିବାଦୀ । ଗାନ୍ଧିବାଦୀ କାର୍ଯ୍ୟକ୍ରମ ସହ ଗତି କରୁ କରୁ ଗତିବାବୁ ମାର୍କସ୍‌ବାଦକୁ ଭେଟିଥିଲେ । ମାର୍କସ୍‌ବାଦର ଅର୍ଥନୈତିକ ବ୍ୟାଖ୍ୟା—ମାର୍କସଙ୍କର ଉଦ୍‌ବୃତ୍ତ ମୂଲ୍ୟତତ୍ତ୍ୱ ତାଙ୍କୁ ଶ୍ରମଜୀବୀ ମଣିଷର ଶୋଷଣ ବାଟର ପାହାଚ ଚଢ଼ାଇଛି । ମାର୍କସବାଦ ହିଁ ଶୋଷିତ ଜନତାର ଶୋଷଣ ମୁକ୍ତିର ପଥ ବୋଲି ସେ ପଥରେ ସେ ଯାଇଛନ୍ତି । ସେଥିପାଇଁ ସେ କଂଗ୍ରେସରୁ ହୋଇଛନ୍ତି କମ୍ୟୁନିଷ୍ଟ । କୌଣସି ପ୍ରକାର ଦ୍ୱିଧା, ଦ୍ୱନ୍ଦ୍ୱ, ବିଭ୍ରାନ୍ତି ତାଙ୍କୁ ସେହି ପଥରୁ ବିଚ୍ୟୁତ କରିପାରି ନାହିଁ ଶେଷ ଜୀବନ ଅବଧି ।

ସାଂଗଠନିକ କ୍ଷେତ୍ରରେ ତାଙ୍କର ଥିଲା ସମୟାନୁବର୍ତ୍ତିତା । କୃଷକ ସଭା ଓ କମ୍ୟୁନିଷ୍ଟ ପାର୍ଟିର ଗୃହୀତ ସିଦ୍ଧାନ୍ତକୁ କାର୍ଯ୍ୟକାରୀ କରିବାରେ ତାଙ୍କର ବଳିଷ୍ଠ ଭୂମିକା ଅନ୍ୟମାନଙ୍କ ପାଇଁ ପ୍ରେରଣା ଓ ଅନୁକରଣଯୋଗ୍ୟ ହୋଇଥାଏ ସବୁବେଳେ ।

ସରଳ, ନିରାଡ଼ମ୍ବର ଓ ଅମାୟିକ ସ୍ୱଭାବ ଅଥଚ କର୍ତ୍ତବ୍ୟନିଷ୍ଠ ଗତିବାବୁଙ୍କ ଜୀବନର ଗତିପଥ ବଡ଼ ବିଚିତ୍ର । ସେ ଥିଲେ ସ୍ପଷ୍ଟବାଦୀ । ସ୍ପଷ୍ଟକଥା କହିବା ଯୋଗୁ ସେ ଅନେକଙ୍କର ଅପ୍ରିୟ ହେଉଥିଲେ ମଧ୍ୟ ତାଙ୍କର ସରଳ ଓ ଆମାୟିକ ବ୍ୟବହାର ଶତ୍ରୁତା ସୃଷ୍ଟି କରୁ ନଥିଲା ।

୧୯୪୯—୫୦ ମସିହା କଥା । ସ୍ୱାଧୀନତା ପରବର୍ତ୍ତୀ କାଳ । ସେତେବେଳେ ଜୋରଦାର ଭାଗଚାଷୀ ଆନ୍ଦୋଳନ ପୁରୀଜିଲ୍ଲାରେ, ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାରେ ମଧ୍ୟ । ତେଭାଗା ଆନ୍ଦୋଳନ । ଜମିମାଲିକର ଭାଗେ ଚାଷୀର ଦି'ଭାଗ । 'ଲଙ୍ଗଳ ଯାର—ଜମି ତାର' ସ୍ଲୋଗାନ ସବଂଷ ଧ୍ୱନିତ ହେଉଥାଏ । ଗାଁ ଗାଁ ଚାଷୀମାନେ ସଙ୍ଗଠିତ ହୋଇ କୃଷକସଭା ନେତୃତ୍ୱରେ ଧାନ କାଟିଆଣି କୋଠ ଖଳାରେ ଜମା କରୁଥାନ୍ତି । ଏହି

ଆନ୍ଦୋଳନରେ ଜମି ମାଲିକମାନେ ପୋଲିସ ସହାୟତାରେ କୃଷକ କର୍ମୀ ଓ ନେତାମାନଙ୍କ ନାମରେ ନାନା ପ୍ରକାର ମିଥ୍ୟା ମକଦ୍ଦମାମାନ ସୃଷ୍ଟି କରିଥାଆନ୍ତି । ସେହିପରି ଏକ ମକଦ୍ଦମାରେ ମୁଁ ଖୋର୍ଦ୍ଧା କୋର୍ଟରେ ହାଜର ହେଉଥାଏ । ସାଙ୍ଗରେ ଥାଆନ୍ତି ଟାଙ୍ଗି ଥାନା ହରିପୁର ଗାଁର କୃଷକ ନେତା ଶ୍ରୀ ହରମ୍ବର ହରିଚନ୍ଦନ ।

ଆମ ନାମରେ ଅଟକ ଆଇନରେ ୱାରେଣ୍ଟ ଥିବା ଜାଣିଲୁ । କିନ୍ତୁ ଆତ୍ମଗୋପନରେ ରହିଥିବା କୃଷୀ ନେତା ଗୋକୁଳମୋହନ ରାୟ ଚୂଡ଼ାମଣି ଓ ଗଙ୍ଗାଧର ପାଇକରାୟଙ୍କୁ ଭେଟିବାକୁ ମନ—ପୁଲିସକୁ ବାଟକାଟି ଯାଉଯାଉ ଅଚ୍ଛାଡ଼ ବର୍ଷା-ଢଡ଼ଢଡ଼-ଚଡ଼ଚଡ଼ । ଗୋଟାପଣେ ଓଦା ସାଲୁ ସାଲୁ ହୋଇ ଗଲାବେଳେ ଗୋଟିଏ ଆଲୋକ ଶିଖା ଦେଖି ସେଇ ଘର ବାରଣ୍ଡାରେ ଆଶ୍ରାନେବାକୁ ଗଲୁ । ସେ ଗାଁରେ ସଭାହେବ ଓ ଆମେ ଯିବୁ ବୋଲି କେଉଁଠି ଖବରପାଇ ବେଗୁନିଆର ପୁଲିସବାବୁ ସେଠି ବସି ମୋତେ ଦେଖି ହଜିଲା ବଳଦ ଖୋଜିଲାଠେଇଁ ଭାବ ଉଲ୍ଲସିତ ହୋଇଗଲା । ଭିଜାଲୁଗା ଦେଖି ଆମ ପ୍ରତି ଦରଦ ପ୍ରକାଶ କରି ଗୃହସ୍ୱାମୀକୁ ଶୁଖିଲା ଲୁଗାପଟା ଦେବାକୁ ପରାମର୍ଶ ଦେଲେ । ତାପରେ ପଡ଼ିଲା ହାତକଡ଼ି, ଅଣ୍ଟାରେ ଦଉଡ଼ି । ଟ୍ରକରେ ନେଇ ବସାଇଲାବେଳେ ଆମ ପାଖରେ ଥିବା ଗୁପ୍ତ କାଗଜପତ୍ରରୁ କିଛି ଦେଖାଇ ଆଜିତକ ବାନ୍ଧବୃନ୍ଦ ଗୋଟାଏ ବୁଦା ଭିତରକୁ ପୁଲିସ ଅଲକ୍ଷ୍ୟରେ ଫିଙ୍ଗିଦେଲୁ । ପରେ ସାଥୀମାନଙ୍କୁ ସେସବୁ ଉଦ୍ଧାର କରିବାକୁ ଖବର ଦେଲୁ । ଅଟକ ଆଦେଶ ପୁଲିସ ଧରାଇଦେଇ ଖୋର୍ଦ୍ଧାରୁ ପଠାଇଦେଲେ ପୁରୀ ଜେଲକୁ ।

ଆଗରୁ ବହୁ କମ୍ୟୁନିଷ୍ଟ ବନ୍ଦୀ ପୁରୀ ଜେଲରେ । ଆମ ସମସ୍ତଙ୍କ ଆରାଧ୍ୟ ଗଣ୍ଡବାବୁଙ୍କର ସ୍ୱାଧୀନତା ସଂଗ୍ରାମ କାଳର ବାରମ୍ବାର ଜେଲବାସରେ ମନବୋଧ ହୋଇନାହିଁ । ସ୍ୱାଧୀନତା ପରେ ବି ସେହି ବୀର ଯୋଦ୍ଧା କୃଷୀଙ୍କ ସ୍ୱାର୍ଥଲାଗି ଠିଆହେବାରୁ କାରାବାସରେ ।

ଗଣ୍ଡବାବୁଙ୍କୁ ପୁରୀ ଏସ. ପି. ଗିରଫ କରି ନେଇଥାନ୍ତି । ସେତେବେଳେ ଜେଲରେ ଥିଲେ ଉପେନ୍ଦ୍ରନାଥ ଦାସ (ଚନ୍ଦକା), ଅନନ୍ତଚରଣ ଦେଙ୍ଗ (ଚନ୍ଦକା), ନିରଞ୍ଜନ ପଟ୍ଟନାୟକ (ଚନ୍ଦକା) ନିମାଇଁ ହରିଚାଳ (ବଡ଼ପାରି), ଦୁର୍ଗାଚରଣ ଧଳ (ବଡ଼ପାରି), ଗୋପୀମୋହନ ପଟ୍ଟନାୟକ (ବାଲିପାଟଣା), ପ୍ରାଣକୃଷ୍ଣ ନାୟକ (ନିମାପଡ଼ା), ଗୋପୀନାଥ ନାରାୟଣ ବ୍ରହ୍ମରାୟ (ପୁରୀ), ଗୌରହରି ନାୟକ (ପୁରୀ), ସୋମନାଥ ପାଢ଼ୀ (କାକଟପୁର), କୁନ୍ଦନରାମ (ଖୋର୍ଦ୍ଧା), ପୂର୍ଣ୍ଣଚନ୍ଦ୍ର ମହାନ୍ତି (ବାଲିପାଟଣା), ବାଙ୍କନିଧି ସୁବୁଦ୍ଧି (ସାନପଦର), ବେଙ୍ଗଦେଇ (ପୁରୀ), ପରେ କଟକ ଜେଲରୁ ପୁରୀଜେଲକୁ ଆସିଲେ ଦୁର୍ଗାଚରଣ ମହାନ୍ତି ।

ଜେଲ ଭିତରେ ପ୍ରବେଶ କରିବା ପରେ ଆମକୁ ୧୭ ନମ୍ବର ୱାର୍ଡ଼କୁ ନିଆଗଲା । ସେଠାରେ ଏମାନଙ୍କ ମଧ୍ୟରୁ କାହାରିକୁ ଦେଖିଲୁ ନାହିଁ । କେବଳ ଥାଆନ୍ତି ପ୍ରାଣକୃଷ୍ଣ ନାୟକ । ସେ ଅସୁସ୍ଥ ଥାଆନ୍ତି । ଆମପାଇଁ ଦୁଇଟି ବେଡ଼ ସଜ୍ଜିତ ହୋଇଥାଏ । ରହିଲୁ । ଅନ୍ୟମାନେ କେଉଁଠି ଅଛନ୍ତି ବୋଲି ମନ ଉଦ୍‌ବେଗରେ ପଚାରିଲା ବେଳକୁ ଦୂରରୁ ଖୁବ ବଡ଼ପାଟିରେ ଡାକରା ଭାସିଆସିଲା—ରାଧୁସିଂ ! ଜେଲରେ ପୋଲିସର ଅନ୍ୟାୟର ପ୍ରତିବାଦରେ ଆମେ ଅନଶନ କରିଛୁ । ତୁମେ ଅନସନରେ ଯୋଗଦିଅ ।

ସକାଳ ଦଶଟାରେ ଖୋର୍ଦ୍ଧାଠାରେ ଥାନା ହାଜତରେ ଆଣି ଦେଇଥିଲେ ଭାତଡାଲି, ତରକାରି । ଭୋକ ଜୋର । ଆଗରେ ଥୁଆହୋଇଛି ଉତ୍ତମ ଖାଦ୍ୟ । ଅନଶନରେ ଯୋଗଦେବା ପାଇଁ ଶୂନ୍ୟବାଣୀ । ସବୁ କଥା ଜଣାନାହିଁ । ସିଦ୍ଧାନ୍ତ ମାନିବାକୁ ହେବ । କହିଲି, ନେଇଯାଆନ୍ତୁ ଏ ଖାଦ୍ୟ । ଅସୁସ୍ଥବନ୍ଦୀ ପ୍ରାଣକୃଷ୍ଣଙ୍କଠାରୁ ଜାଣିଲି ଯେ ମେ’ ପହିଲାରେ ପତାକା ଉତ୍ତୋଳନ କରୁଥିଲେ—ଲାଲ ପତାକା । ଜେଲର୍ ପ୍ରଭୃତି ଆସି ଛଡ଼ାଇ ନେଲେ ।

ସଂଘର୍ଷ ହେଲା । ତା'ପରେ ସେମାନେ ଯାଇ ଫିମେଲ ୱାର୍ଡ଼ରେ ଥିବା ନାଗାନେତ୍ରୀ ରେଙ୍ଗ ହେଲେନ ପ୍ରଭୃତିଙ୍କୁ ମଧ୍ୟ ମାରଧର କଲେ । ତେଣୁ ଯୋଗଦେଇ ନଥିବା ମହିଳାମାନଙ୍କୁ ମାରଧର କରିଥିବାରୁ ତାହାର ବିଚାର ନହେବା ପର୍ଯ୍ୟନ୍ତ ଅନଶନ । ପାଞ୍ଚଦିନ । ଅନଶନର ଅଭିଜ୍ଞତା ନଥିଲା । ତଥାପି ରହିଲି । ବେମାରଥିବାରୁ ସ୍ପ୍ରାଣକୃଷ୍ଣଙ୍କୁ ଅନଶନ କ୍ୟାମ୍ପ ପକ୍ଷରୁ ବାରଣ । ପଞ୍ଚମଦିନ ମାଜିଷ୍ଟ୍ରେଟ ଆସି ବିଚାର କରି ପ୍ରତିବିଧାନ କରିବା ପରେ ଅନଶନ ଭଙ୍ଗହେଲା । ଘଟଣା ପରେ ସବୁ ରାଜବନ୍ଦୀଙ୍କୁ ବିଭିନ୍ନ ୱାର୍ଡ଼ରେ ବିଚ୍ଛିନ୍ନ କରି ରଖାଯାଇଥାଏ । ନିମାଇଁ ବିଶ୍ୱାଳ, ଦୁର୍ଗାଧର ଓ ଉପେନ୍ଦ୍ର ଦାଶଙ୍କୁ ଜେଲ ଭିତରେ ଥିବା ସେଲ୍‌ରେ ରଖାଯାଇଥାଏ । ଅନଶନ ମଧ୍ୟରେ କୁନ୍ଦନ ରାମଙ୍କ ଅବସ୍ଥା ଖରାପ ହେବାରୁ ତାଙ୍କୁ ନେଇ ଜେଲ ଡାକ୍ତରଖାନାରେ ନାଜାଲ ଫିଡ଼ିଙ୍ଗ୍ (ନାକବାଟେ ରବରନଳୀ ପୂରାଇ ଖାଦ୍ୟଦେବା) କରାଗଲା । ତାପରେ ମୋ ପାଳି ପଡ଼ିଲା । ତଥାପି ଅନଶନ ଚାଲୁ ରହିଲା । ବିଚାର ଶେଷରେ ସମସ୍ତଙ୍କୁ ଏକତ୍ର ରଖାଗଲା ।

ଶତିବାବୁଙ୍କର ଥାଏ ପାନଖିଆ ଅଭ୍ୟାସ । ସେ ଗୋଟାଏ ପାନ ସଜ ବନ୍ଦୋବସ୍ତ କରି ରଖିଥାନ୍ତି । ଆମମାନଙ୍କୁ ଏକ ସଣ୍ଡ୍ରି ଆଲାଉନ୍‌ସ ମିଳୁଥାଏ । ସେଥିରେ ପାନ, ବିଡ଼ି, ସିଗ୍ରେଟ ପ୍ରଭୃତି ବନ୍ଦୋବସ୍ତ କରାଯାଇ ଅଣାଯାଉଥାଏ । ତିନିମାସକୁ କ୍ଲୋଦିଙ୍ଗ ଆଲାଉନ୍‌ସ ଦିଆଯାଉଥାଏ । ସେଥିରେ ଗାମୁଛା ଲୁଗା ଇତ୍ୟାଦି କିଣାଯାଏ । ଖବର କାଗଜ, ବହି ମଧ୍ୟ ଦିଆଯାଉଥାଏ ପଢ଼ିବା ପାଇଁ । ଯାହା ଦିଆଯାଉ ନଥାଏ, ତାହା ମଧ୍ୟ ଗୁପ୍ତରେ ରଖାଯାଉଥାଏ ଭିତରକୁ । ଏପରିକି ପାର୍ଟି ଡକୁମେଣ୍ଟ ମଧ୍ୟ । ହେଉଥାଏ ରାଜନୈତିକ ପରିସ୍ଥିତିର ଆଲୋଚନା ପର୍ଯ୍ୟାଲୋଚନା । ସେତେବେଳେ ଇଣ୍ଟରନାସନାଲ ସଙ୍ଗୀତ—"ଉଠଜାଗ ଭୋକଶୋଷୀ ବନ୍ଦୀ, ତୋଳ ତୋର ଲାଲ ତଲୱାର..." ଏଥିରେ ଯୋଗ ନଦେଲେ ସର୍ଦ୍ଦାରଙ୍କର ତାଗିଦ । ବିଶୃଙ୍ଖଳା ଅସହ୍ୟ ତାଙ୍କ ପକ୍ଷରେ ।

ଜେଲ ଭିତରୁ ହାଇକୋର୍ଟ ରିଟ୍ କରିବା ପାଇଁ ସ୍ଥିର କରାଗଲା । ଅନ୍ୟମାନଙ୍କ ରିଟ୍ ଖାରଜ ହୋଇଗଲା । ମୋ ରିଟ ମଞ୍ଜୁର ହେଲା ଓ ବିଚାର ପରେ ଖଲାସ ଆଦେଶ ଆସି ପହଞ୍ଚିଲା । ଜେଲରେ ଶତିବାବୁଙ୍କ ସହ ଏକମାସ ଛ'ଦିନ ବୋଧହୁଏ ସାନିଧ୍ୟ ଲାଭ କରି ଅତି ନିକଟରୁ ତାଙ୍କୁ ଜାଣିବାକୁ, ଦେଖିବାକୁ, ଶୁଣିବାକୁ, ବୁଝିବାକୁ ମିଳିଥିଲା ।

ଏହିପରି ମହାନ୍ ବ୍ୟକ୍ତିମାନଙ୍କ ଦ୍ୱାରା ହିଁ ସାମାଜିକ ପରିବର୍ତ୍ତନର ଧାରା ଦ୍ରୁତତର ହୋଇଥାଏ । ଶତିବାବୁ ଆଜି ନଥିଲାବେଳେ ତାଙ୍କର ସାହଚର୍ଯ୍ୟ ଅନୁଭବରେ ଅଛନ୍ତି । ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଜ୍ଞାପନ କରୁଛି ।





# ତଳବରଡ଼ା ଖସିଲା—ପଡ଼ିବ ଆମପାଳି

● ପର୍ଶୁରାମ ପଟ୍ଟନାୟକ

ଘରେ ବସି ଟି.ଭି. ଦେଖୁଥିଲୁ । ସମ୍ବାଦରୁ ଶୁଣିଲି ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ଆଉ ନାହାନ୍ତି । ହଠାତ୍ ମୁଣ୍ଡଟା ମୋର କ'ଣ ହୋଇଗଲା । ମନଟା ଖାଲି ଗୋଳେଇଘାଣ୍ଟି ହେଲା । ଅସ୍ଥିର ରହିପାରିଲି ନାହିଁ । ମୋ ସ୍ତ୍ରୀ ମରିଯାଇଥିଲା ତାହା ଯେତେ ଦୁଃଖ ଦେଇନଥିଲା ଗତିବାବୁଙ୍କ ମୃତ୍ୟୁ ଖବର ମୋତେ ତା'ଠାରୁ ଅଧିକ ଦୁଃଖ ଦେଇଥିଲା । ମନେ ମନେ ଭାବିଲି—

"ତଳବରଡ଼ା ଖସିଲା, ଉପର ବରଡ଼ାର ଦିନକାଳ ଆସି ହୋଇଲା" ତାଙ୍କଠାରୁ ବୟସରେ ଅଳ୍ପ ସାନ । ପ୍ରାଣନାଥବାବୁ, ସାଧୁବାବୁ ଯାଇଥିଲେ । ଗତିବାବୁ ଗଲେ । ଆମ ଦିନକାଳ ପାଖେଇଆସିଲା । ସମସ୍ତଙ୍କୁ ଛାଡ଼ି ଆଉ କେତେଦିନ ରହିବା । ଏହିପରି ନାନା ଦୁଶ୍ଚିନ୍ତା ମନକୁ ଆନ୍ଦୋଳିତ କଲା । ଖାଇବା, ଶୋଇବା ସବୁକିଛି ବିଷ ଭଳି ଲାଗିଲା ।

ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ କାଳ ଧରି ସେ ଏ ଦେଶପାଇଁ ଯେଉଁ କର୍ମ କରିଯାଇଛନ୍ତି ସେ ସବୁ ହେଉଛି—ଇତିହାସ । ତେଣୁ ଗତିବାବୁ ଅମର ।

ତାଙ୍କ ସହିତ ମୁଁ ୧୯୩୧ ମସିହାରୁ ମିଶିଛି । ସେ ଦେଖିବାମାତ୍ରେ ଅନ୍ୟ କିଛି ପଚାରିବା ପୂର୍ବରୁ ପ୍ରଥମେ ପଚାରିବେ "ପର୍ଶୁ କ'ଣ ଖାଇଛୁ ?" କି ସ୍ନେହ ! ମୁଁ ବହୁ ନେତା ଓ କର୍ମୀଙ୍କ ସହିତ ମିଶିଛି କିନ୍ତୁ ଗତିବାବୁ ତାଙ୍କର ଏଇଗୁଣ ଯୋଗୁ ସେ ଏକ ଭିନ୍ନ ଧରଣର ମଣିଷ ଥିଲେ ।

ସେ ପୁରୀ ଜିଲ୍ଲା କଂଗ୍ରେସ କମିଟିରେ ଜଣେ ଟାଣୁଆ ନେତା । ପୁରୀର ବଳିଆପଣ୍ଡା ଠାରେ ହେବାକୁ ଥିବା ଜାତୀୟ କଂଗ୍ରେସ ଅଧିବେଶନ ବସିବାର ପ୍ରସ୍ତୁତି କାର୍ଯ୍ୟ ଗତିବାବୁ ବୁଝାସୁଝା କରୁଥିଲେ । ପୁରୀ ମରିଚକୋଟର ଏକ କୋଠାରେ କଂଗ୍ରେସର ଅଭ୍ୟର୍ଥନା କମିଟି ଅଫିସ ହୋଇଥିଲା । ସେଠାରେ ଓଡ଼ିଶାର ନେତାମାନେ ରହୁଥିଲେ । ତାଙ୍କ କର୍ମଦକ୍ଷତାରେ ମୁଗ୍ଧ ହୋଇ ସର୍ଦ୍ଦାର ବୋଲି ଡକାଗଲା ।

ଗତିବାବୁଙ୍କ ସହିତ, କଂଗ୍ରେସ, କଂଗ୍ରେସ-ସୋସାଲିଷ୍ଟପାର୍ଟି, କୃଷକ ସଙ୍ଘ ଓ କମ୍ୟୁନିଷ୍ଟପାର୍ଟିର ନେତା ଭାବେ ମିଶି ଦୀର୍ଘ ୬୨ ବର୍ଷକାଳ କାର୍ଯ୍ୟ କରିବାର ସୁଯୋଗ ମିଳିଛି ।

୧୯୩୧ରେ କଂଗ୍ରେସ ବେଆଇନ୍ । ପ୍ରାଣନାଥ ପଟ୍ଟନାୟକ, ଗୁରୁଚରଣ ପଟ୍ଟନାୟକ ପୁରୀରେ ଆତ୍ମଗୋପନ କରି କଂଗ୍ରେସ ସତ୍ୟାଗ୍ରହୀମାନଙ୍କ ଆନ୍ଦୋଳନ ପରିଚାଳନା କରୁଥିଲେ । ମୋହନ ଦାସ ନୂଆମଠ ପାଖରେ ରହୁଥିଲେ । ଗଦାଧର ମିଶ୍ର, ଜଗନ୍ନାଥ ମହାନ୍ତି ବାହାରେ ରହି କାର୍ଯ୍ୟ କରୁଥିଲେ । ଗତିବାବୁ ଗୋଟିଏ ପଇତା ପକାଇ, ମୁଣ୍ଡରେ ଚନ୍ଦନଟୋପି ଲଗାଇ ନିଜକୁ ଗତି ମିଶ୍ର ବୋଲି ପରିଚୟ ଦେଇ କଂଗ୍ରେସ କାର୍ଯ୍ୟ ଗୁପ୍ତରେ ପରିଚାଳନା କରୁଥିଲେ ।

୧୯୩୨ ଜାନୁୟାରୀ ୨୬ ତାରିଖରେ କାକଟପୁରରେ ସ୍ୱାଧୀନତା ଦିବସ ପାଳନ କରିବା ପାଇଁ ତା ୨୪ ରିଖରୁ ପୁରୀରୁ ଚାଲି ଚାଲି ଯାଇଥିଲୁ । କାକଟପୁରରେ ସାତ ଆଠ ଜଣ ବନ୍ଦୀ ହେଲେ । ଗତିବାବୁ ପୁରୀ ଫେରିଆସିଲେ । ସେହି ୨୬ ତାରିଖରେ ଭୁବନେଶ୍ୱର, ରଣପୁର, ବେଗୁନିଆ, ବୋଲଗଡ଼ ଠାରେ ସ୍ୱାଧୀନତା ଦିବସ ପାଳନ କରିବାକୁ ଯାଇ ବହୁ କଂଗ୍ରେସ ନେତା, କର୍ମୀ ଗିରଫ ହୋଇ ଜେଲ୍‌କୁ ଗଲେ ।

ମନେପଡ଼େ ସ୍ୱଦେଶୀ ବର୍ଜନ ଆନ୍ଦୋଳନବେଳେ ଗତିବାବୁଙ୍କର ପୁରୀ କାଳୁରାମ ଦୋକାନରେ ସତ୍ୟାଗ୍ରହର ଧମକ କଥା । କାଳୁରାମ ସ୍ୱଦେଶୀ ଲୁଗା ବିକିବେ ନାହିଁ ବୋଲି ଲେଖିଦେଲେ । କୋର୍ଟରେ କାଳୁରାମ ଲେଖିଦେଇଥିବା ଲେଖାଟି ଦେଖାଇବାରୁ ମାଜିଷ୍ଟ୍ରେଟ୍ ଗତିବାବୁ ପ୍ରମୁଖଙ୍କୁ ଖଲାସ କରିଦେଇଥିଲେ । ପୁରୀର ସଫଳତାକୁ ଦେଖି ତାପରେ ଜଟଣୀରେ ସେଇ କୌଶଳ ନିଆଗଲା । ଜଟଣୀରେ ଆନ୍ଦୋଳନ କରିବା ପାଇଁ ପୁରୀରୁ ପ୍ରାଣନାଥ ପଟ୍ଟନାୟକ, ଗତିକୃଷ୍ଣ ସ୍ୱାଇଁ, ବଳରାମ ପାଇକରାୟ, ପର୍ଶୁରାମ ପଦାତିକରାୟ (ନିଜେ ଲେଖକ) ଚାଲି ଚାଲି ଗଲୁ । ବାଟରେ ବାଘ, ଭାଲୁ, ସାପଙ୍କ ଅଡ଼ଡ଼ା । ଦୁଇଦିନ ଉପବାସ । ପ୍ରାଣନାଥ ବାବୁଙ୍କ ନିକଟରେ ଦୁଇଗୋଟି ଟଙ୍କା ଥିଲା । ମାଣିକଗୋଡ଼ାର ଅକ୍ରୁର ସାହୁଙ୍କୁ ପଠାଗଲା, ଜଟଣୀ ବଜାରରୁ କିଛି ମୁଢ଼ି, ପକଡ଼ି କିଣିଆଣିବା ପାଇଁ । ସେ ଜଳଖିଆ କିଣି ଆସିବା ସମୟରେ ପୁଲିସ ସନ୍ଦେହ କଲା । ଖଦଡ଼ ଲୁଗା ପିନ୍ଧିଥିବାରୁ ପୁଲିସ ତାଙ୍କୁ ଧରିନେଇ ରେଲରେ ବସାଇ ବରହମପୁରରେ ଛାଡ଼ିଦେଲେ । ସେହିପରି ଉପବାସରେ ରହିଲୁ । ବହୁ କଷ୍ଟ ଯାତନାର ଅନ୍ତନାହିଁ । ଗତିବାବୁଙ୍କର ଏଥିପ୍ରତି ଟିକେ ଖାତିର୍ ନାହିଁ । ଏମିତି ଅନେକ ଘଟଣା ସହିତ ଜଡ଼ିତ ଗତିବାବୁ । ଏହି ଅବସରରେ ଗତିବାବୁ ନିଜ ଗ୍ରାମକୁ ଗଲେ । ଆମେ ଅନ୍ୟମାନେ ୮।୧୦ ଜଣ ରହିଲୁ । ଗୁରୁଚରଣ ପଟ୍ଟନାୟକ ପଠାଇଥିବା ପ୍ରସ୍ତରପତ୍ର ଧରି ଆମେ କେତେଜଣ ବେଗୁନିଆ, କଳାପଥର ଅଞ୍ଚଳକୁ ଗଲୁ । ସେଠାରୁ ଦୁଇଦିନ ପରେ ଫେରିଲୁ । ଦେଖିଲୁ ଥାନାରେ ଗହଳି । ତେଣୁ ଭାବିଲୁ ବୋଧହୁଏ ପୁଲିସ ସମସ୍ତଙ୍କୁ ଧରି ଆଣିଛନ୍ତି । ତାପରଦିନ ଗତିବାବୁ କାକଟପୁର ଅଞ୍ଚଳରୁ ୪।୫ ଜଣଙ୍କୁ ସଙ୍ଗରେ ଧରି ଆସି ପହଞ୍ଚିଲେ । ଗତିବାବୁଙ୍କ ନେତୃତ୍ୱରେ ଆମେ ତାପରଦିନ ଜଟଣୀରେ ପିକେଟିଂ କରି ଗିରଫ ହେଲୁ । ଖୋର୍ଦ୍ଧା କୋର୍ଟରେ ଆମର ବିଚାର ହେଲା । ଗତିବାବୁଙ୍କୁ ଛଅମାସ ଓ ଅନ୍ୟ ପାଞ୍ଚଜଣଙ୍କୁ ପାଞ୍ଚ ପାଞ୍ଚ ମାସ ଜେଲ୍‌ଦଣ୍ଡ ମିଳିଲା । ଏଥିପୂର୍ବରୁ ପ୍ରାଣନାଥବାବୁଙ୍କର ବିଚାର ଶେଷ ହୋଇ ତାଙ୍କୁ ପୁରୀ ଜେଲ୍‌କୁ ପଠାଇ ଦିଆଯାଇଥିଲା । ସେଠାରୁ ସମସ୍ତେ ଗଲୁ ପାଟଣା କ୍ୟାମ୍ପ ଜେଲ୍‌କୁ ।

ସର୍ଦ୍ଦାର ଗତିକୃଷ୍ଣ ସ୍ୱାଇଁ ପୁରୀଜିଲ୍ଲା କଂଗ୍ରେସରେ ଜଣେ ଆଗୁଆ ନେତା ଥିଲେ । ବନ୍ୟା ସମୟରେ ବନ୍ୟାଦ୍ୱାରା କ୍ଷତିଗ୍ରସ୍ତ ଅଞ୍ଚଳକୁ ଯାଇ ବନ୍ୟାପ୍ରପୀଡ଼ିତ ଲୋକଙ୍କ ପାଖରେ ପହଞ୍ଚି ସେମାନଙ୍କୁ ସାହାଯ୍ୟ କରୁଥିଲେ । ବିଭିନ୍ନ ସମୟରେ ସେ ନିଜେ ରୋଗୀମାନଙ୍କର ସେବା କରୁଥିଲେ ।

ଗତିବାବୁ କାକଟପୁରର ମୂଳାଗଡ଼ଠାରେ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରି ସେହିଠାରେ ରହି ସେହିଠାରୁ ସଙ୍ଗଠନ, ଆନ୍ଦୋଳନକୁ ନେତୃତ୍ୱ ଦେଉଥିଲେ । ତାଙ୍କ ସହିତ ସେହି ଆଶ୍ରମରେ ବଳରାମ ପାଇକରାୟ, ଲୋକନାଥ ରାୟ ଏହି କାର୍ଯ୍ୟ କରୁଥିଲେ ।

ସେ ପୁରୀଜିଲ୍ଲା ବୋର୍ଡ଼ର ସଭ୍ୟଭାବେ ନିର୍ବାଚିତ ହୋଇଥିଲେ । କଂଗ୍ରେସ ସଙ୍ଗଠନ କାର୍ଯ୍ୟ ସହିତ ଗତିବାବୁ କୃଷକ ସଙ୍ଗଠନ ଗଠନ କରି ଜମିଦାରମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଉଥିଲେ । ଓଡ଼ିଶାର କୃଷକ ଆନ୍ଦୋଳନର ସେ ଜଣେ ଜଣାଶୁଣା ନେତା ଥିଲେ ।

୧୯୪୨ରେ ଗିରଫ ହୋଇ ସେ ଦୁଇବର୍ଷକାଳ ବ୍ରହ୍ମପୁର ଜେଲ୍‌ରେ ବନ୍ଦୀ ହୋଇ ରହିଲେ । ସେଠାରେ ସେ କମ୍ୟୁନିଷ୍ଟ ହେଲେ । ସେ ପୁରୀଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଥିଲେ ଓ ରାଜ୍ୟ କାର୍ଯ୍ୟକାରୀ କମିଟି ସଭ୍ୟ ରହିଥିଲେ । କଣ୍ଟ୍ରୋଲ କମିଶନର ସଭ୍ୟ ରହିଥିଲେ । ରାଜ୍ୟ କୃଷକ ସଭାର ଉପସଭାପତି ଭାବେ ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲେ ।

୧୯୬୭ରେ ସେ କାକଟପୁର ବିଧାନସଭା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ବିଧାନସଭାକୁ ଆସିଥିଲେ ।

ତାଙ୍କର ମୃତ୍ୟୁ ଆମ ସମସ୍ତଙ୍କ ପାଇଁ ଦୁଃଖଦାୟକ, ତାଙ୍କ କର୍ମମୟ ଜୀବନର ଇତିହାସ ଆଗାମୀ ବଂଶଧରଙ୍କ ପାଇଁ ଶିକ୍ଷଣୀୟ ହେଉ ।



ମାଣିକଗୋଡ଼ା, ବୋଲଗଡ଼

# ଏକ ମହାନ୍ ଆତ୍ମାର ସ୍ମୃତିଚାରଣ

● ବୈକୁଣ୍ଠ ନାଥ ସ୍ୱାଇଁ

ପୂଜ୍ୟ ରଥବାବୁ ଜୀବନକାଳ ମଧ୍ୟରେ ବହୁ ଅଗଣନ୍ତି ରଥ ଦେଇଛନ୍ତି । ରଥ ନାମକୁ ସାର୍ଥକ କରି ସେ ସତତ ଗତିଶୀଳ ହୋଇଛନ୍ତି ଆଗକୁ ଆଗକୁ । ସ୍ୱାଧୀନତା ଆନ୍ଦୋଳନ ସମୟରେ ଆବିର୍ଭାବ ଘଟିଥିଲା ଏ ଅଞ୍ଚଳରେ ଦୁଇଟି ଅଗ୍ନିବାଣ ଶିଖାର, ଦୁଇଟି ଉତ୍ସର୍ଗୀକୃତ ଯୌବନର । ଜଣେ ହେଉଛନ୍ତି ମୋର ବଡ଼ବାପା ପୂର୍ଣ୍ଣାନନ୍ଦ ସ୍ୱାଇଁ, ଅନ୍ୟ ଜଣକ ମୋର ପିଉସା ରଥକୃଷ୍ଣ ସ୍ୱାଇଁ । ବୈବାହିକ ସମ୍ପର୍କ ପରେ ସେ ହେଲେ ପିଉସା । ଆମ ପରିବାର ସହିତ ବୈବାହିକ ବନ୍ଧନ ପୂର୍ବରୁ ଉଭୟଙ୍କର ଆଦର୍ଶ ଓ ଚିନ୍ତାଧାରାର ସଚେତସେପରି ବୈବାହିକ ବନ୍ଧନ ସଙ୍ଗଠିତ ହୋଇଥିଲା ।

ରଥବାବୁ ଓ ପୂର୍ଣ୍ଣାନନ୍ଦବାବୁଙ୍କର ସାଥୀ ଓ ସହଯାତ୍ରୀ ଥିଲେ ମଧୁସୂଦନ ମିଶ୍ର, ମୋର ଶ୍ୱଶୁର ବାଳକୃଷ୍ଣ ସ୍ୱାଇଁ ଓ ପୁରୁଷୋତ୍ତମ ମୁଦୁଲି ।

ସ୍ୱାଧୀନତା ଆନ୍ଦୋଳନ ସମୟରେ କଂଗ୍ରେସ ଅନୁଷ୍ଠାନ ଥିଲା ସଂଗ୍ରାମଶୀଳ, ସେବା-ସ୍ନାତ । ମାତ୍ର ସ୍ୱାଧୀନତା ପ୍ରାପ୍ତି ପରେ ଯେତେବେଳେ ବହୁ ସଂଗ୍ରାମୀବନ୍ଧୁ ତ୍ୟାଗ ସ୍ଥାନରେ ଭୋଗ ଓ ସଂଗ୍ରାମ ପରେ ସିଦ୍ଧିପ୍ରାପ୍ତିର କାମନା-ବଶବର୍ତ୍ତୀ ହେବାକୁ ଇଚ୍ଛା କଲେ, ସେ ସମୟରେ ପୂର୍ଣ୍ଣାନନ୍ଦ ବାବୁଙ୍କ ସହିତ ଗାଁନ ମିଳାଇ ରଥବାବୁ ଗତିକଲେ ଆଗକୁ । ଉଦ୍‌ଘୋଷଣା କଲେ "ଯୁଦ୍ଧ ସରିନାହିଁ, ଅରି ମରିନାହିଁ" ରାଜନୈତିକ ସ୍ୱାଧୀନତାର ମୂଲ୍ୟ ନାହିଁ, ଯଦି ସାମାଜିକ ଓ ଅର୍ଥନୈତିକ ସ୍ୱାଧୀନତା ଦ୍ୱାରା ସିଏ ପରିପୁଷ୍ଟ ନହୁଏ ।

ରଥବାବୁ ଏଇ ସାମ୍ୟବାଦ ପ୍ରତିଷ୍ଠା ପାଇଁ, ସାମାଜିକ ଓ ଅର୍ଥନୈତିକ ସ୍ୱାଧୀନତା ଆଣିବା ପାଇଁ, ସ୍ୱାଧୀନତା ପ୍ରାପ୍ତି ପରେ ସଂଗ୍ରାମ ଚଳାଇଛନ୍ତି ପ୍ରାୟ ଅର୍ଦ୍ଧଶତାବ୍ଦୀ ପାଖାପାଖି, ଶୋଷିତ ମଜଦୁର ଓ ଶ୍ରମିକଙ୍କର ସର୍ବନିମ୍ନ ସୁବିଧା ସୁଯୋଗ ଲାଭ ପାଇଁ । ନିଜ ଗ୍ରାମ ପାଟପୁରକୁ ଏକ ଆଦର୍ଶ ଗ୍ରାମ ରୂପେ ତାଙ୍କର ସ୍ୱପ୍ନ ଅନୁସାରେ ଗଢ଼ିବାକୁ ଚେଷ୍ଟା ଚଳାଇଛନ୍ତି । ଦୀର୍ଘଦିନ ଧରି ତାଙ୍କର ନୀତି ଓ ଆଦର୍ଶରେ ସେ ଗୋଟିଏ ଗ୍ରାମ ନୁହେଁ, ବରଂ ଅଞ୍ଚଳକୁ ଅନୁପ୍ରାଣିତ ତଥା ପ୍ରଭାବିତ କରିଛନ୍ତି ।

ମଣିଷକୁ ମଣିଷ ପରି ଦେଖିବାକୁ ସବୁ ମଣିଷକୁ ସାମ୍ୟବାଦର ଛାତ ତଳେ ଲଚିବାକୁ ସେ ସଂଗ୍ରାମ କରିଗଲେ । ମାତ୍ର ସବୁ କ୍ଷେତ୍ରରେ ସ୍ୱପ୍ନ ସଫଳ ନହେବା ପରି ଏ କ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ସଫଳତା ହାସଲ କରିପାରି ନାହାନ୍ତି । ଚଳନ୍ତି ଓ ଆଗାମୀ ପିଢ଼ି ଉପରେ ଉତ୍ତର ଦାୟିତ୍ୱ ଅର୍ପଣ କରି ତାଙ୍କର ମର ଶରୀର ବିଦାୟ ନେଇଛି ଏ ମାଟିରୁ । ମାତ୍ର ଅକ୍ଷୟ ତୃତୀୟା ପରି ମୁଠି ଅନୁକୂଳ ତିଥିରେ ସେ ବିଦାୟ ନେଇ ସୂଚନା ଦେଇଛନ୍ତି ମୁଠିଏ ବିହନ ଯେପରି ଶତ ସହସ୍ର ମୁଠିରେ ପରିଣତ ହୋଇପାରେ ସେହିପରି ତାଙ୍କର ବନ୍ଧନମୁକ୍ତ ଆତ୍ମା ତାଙ୍କ ପରି ଶତ ଶତ ମଣିଷ ସୃଷ୍ଟି କରିପାରିବ ଏଇ ବିଶ୍ୱାସ ସେ ରଖି ଯାଇଛନ୍ତି । କୃଷକମାନଙ୍କର ଅତି ପ୍ରିୟ ଥିବାରୁ ତାଙ୍କର ପ୍ରୟାଣ ଘଟିଛି କୃଷକମାନଙ୍କର ଅତି ପ୍ରିୟ ତଥା ଅକ୍ଷୟତୃତୀୟାରେ ।

ଆଜିର ଶ୍ରାଦ୍ଧବାର୍ଷିକୀରେ ସେଇ ଅମର ଆତ୍ମାର ଆଶା, ଆକାଂକ୍ଷାର ସଫଳ ରୂପାୟନ ଯଦି ଆମେ କରିପାରିବା, ସମାଜର ଶୋଷିତ, ସର୍ବହରା କୃଷକ ଓ ଶ୍ରମିକମାନଙ୍କର ଉନ୍ନତି ନିମନ୍ତେ ସଂଗ୍ରାମ ଅବ୍ୟାହତ ରଖିପାରିବା, ସେଇ ହେବ ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ସଠିକ୍ ସମ୍ମାନ ପ୍ରଦର୍ଶନ ।

●

# ମଣିଷ ପର ମଣିଷ ଟିଏ

● ନନ୍ଦକିଶୋର ପଟ୍ଟନାୟକ

ବର୍ଷେ ଅତିବାହିତ ହୋଇଗଲା—ରଥବାବୁ ଆମଠାରୁ ଚିରଦିନ ପାଇଁ ଅନ୍ତର ହୋଇଗଲେ । ତାଙ୍କର ସେହି ସ୍ନେହ ଭରା ଡାକ, ସେହି ମିଠା କଥା ଆଉ ଶୁଣିବାକୁ ମିଳୁନାହିଁ । କି ଅପୂର୍ବ ସେ ଲୋକ । ସେ ନଥିଲେ ଏକ ସାଧାରଣ ବ୍ୟକ୍ତି ଥିଲେ ଏକ ଅନୁଷ୍ଠାନ, ଏକ ପ୍ରତୀକ । ସତ୍ୟ ନ୍ୟାୟ ପ୍ରୀତି; ସାଧୁ ସର୍ବଶ୍ରେଷ୍ଠ ଶୃଙ୍ଖଳାର ଅନମନୀୟ ମୂଲ୍ୟବୋଧର ଦୃଷ୍ଟାନ୍ତ । ସେଭଳି ବ୍ୟକ୍ତିତ୍ୱ ବିରଳ । ବର୍ଷେ ହେବ ତାଙ୍କୁ ଝୁରୁଛୁ ।

୮୦ ବର୍ଷ ତଳ ପିଢ଼ୀର ବ୍ୟକ୍ତି ସେ । ଗାନ୍ଧି ଗୋପବନ୍ଧୁ ଭଗବତୀର ଅନୁଗାମୀ ସହକର୍ମୀ ସେ । ଜାତୀୟ ପରମ୍ପରା, ସଂଗ୍ରାମର ବାହକ ସେ । ଜୀବନର ପ୍ରତ୍ୟେକ ସ୍ତରଙ୍କ ମୂଲ୍ୟବୋଧର ସାରସ୍ୱତ ଚିନ୍ତାନାୟକ ସେ ।

୧୯୪୪ ସାଥି ଦୁର୍ଲଭ ସ୍ନେହ ସମ୍ପର୍କ, ଏତେ ନୈତିକ ଓ ସ୍ପଷ୍ଟବାଦୀ ! କାହାପ୍ରତି ଅସୂୟା ନାହିଁ, ଅସହିଷ୍ଣୁତା କାହା ପ୍ରତି ନାହିଁ । ସମଗ୍ର ଜୀବନ—ଏକ ସ୍ୱଚ୍ଛ ମଧୁମୟ ।

ଆମ ରାଜ୍ୟ ପାର୍ଟିର ସର୍ବୋଚ୍ଚ କମିଟିର ସଭ୍ୟ ସେ, ଏପରି କଣ୍ଟ୍ରୋଲ କମିସନର, ଶୃଙ୍ଖଳା ରକ୍ଷାକାରୀ ସଙ୍ଗଠନର ସେ ସଭ୍ୟ ଓ ଅଧ୍ୟକ୍ଷ ଥିଲେ । ସମାନ ମାନଦଣ୍ଡରେ, ସମାନ ବିଚାର ଧାରାରେ ସେ ତେଜସ୍ୱୀ ।

ସଂଗ୍ରାମରେ, ଜେଲ ଜୀବନରେ, ଗଣ ସଙ୍ଗଠନରେ ସବୁଠାରେ ସ୍ୱଚ୍ଛ ବିଚାର । ସମତାହିଁ, ଯଥା ଯୋଗ୍ୟ ବିଚାର । କାହା ପ୍ରତି ଅବିଚାର ନଥିଲା, କାହାକୁ ନ୍ୟୁନ କରିବା ବା କାହାପ୍ରତି ଅହିତ କାମନା ନଥିଲା ଜୀବନାଦର୍ଶରେ ।

ତାଙ୍କର ସର୍ବଶ୍ରେଷ୍ଠ ଅବଦାନ-ଗଣ କମିଟି, ଗଣ ମାନ୍ୟତା, ଗଣ ଜୀବନ, ଗଣଶୃଙ୍ଖଳା, ଗଣ ଆଦର୍ଶ । ଗଣତନ୍ତ୍ର ଓ ଶୃଙ୍ଖଳାର ଶ୍ରେଷ୍ଠ ନିଦର୍ଶନ । ତାର ନମୁନା ଓ କେନ୍ଦ୍ରବିନ୍ଦୁ ତାଙ୍କର ପ୍ରିୟ ଗାଁ ''ପାଟପୁର'' । ଜୀବନର ସବୁ ବିକାଶ, ବିଶ୍ୱର ଆଦର୍ଶସ୍ଥଳୀ । ସେଇ ଗ୍ରାମର ଗ୍ରାମ୍ୟ କମିଟି, କେନ୍ଦ୍ରୀୟ କମିଟି ସବୁ କି ମହାନ, ଆଦର୍ଶ ସ୍ଥାନୀୟ ! ଶାନ୍ତି, ଶୃଙ୍ଖଳା, ଆଦର୍ଶ, ପ୍ରଗତିର ମର୍ମବାଣୀ । ପାଟପୁର ପରମ୍ପରା, ପାଟପୁର ସଂସ୍କୃତି—ତାହା ପୁରପୁରି ନିଜସ୍ୱ । ରଥବାବୁ ତାର ଜୀବନ ଓ କେନ୍ଦ୍ରବିନ୍ଦୁ । ଏଇଠି ତାର ଗୌରବ ଓ ନିଗୂଢ଼ତା, ରଥବାବୁ ପାଟପୁର ଅଭିନ୍ନ ।

ପୁରୀ ଜିଲ୍ଲା ପରିଷଦର ବୈଠକ ବସିଥାଏ । କବାଟ ବନ୍ଦ । ସେ କିନ୍ତୁ କବାଟ ବାହାରେ ଖରାରେ ଛିଡ଼ା ହୋଇଥାନ୍ତି । ମତେ ବଡ଼ ଆଶ୍ଚର୍ଯ୍ୟ ଲାଗେ । ସାହସ କରି ପାଖକୁ ଗଲି, ହତବାକ୍ୟ ହୋଇ ପଚାରିଲି । କଥା କଣ ? ସେ କିନ୍ତୁ ଶୃଙ୍ଖଳିତ ବ୍ୟକ୍ତି । ତାଙ୍କୁ ଦଣ୍ଡ ଦିଆଯାଇଛି । ଡେରିରେ ଆସିବା କାରଣରୁ । ବାହାରେ ଛିଡ଼ା ହେବାକୁ ପଡ଼ୁଛି । ସେ କିନ୍ତୁ ହସ ହସ. ଶୃଙ୍ଖଳା ପାଳନ କରୁଛନ୍ତି ଏହି ପରିଣତ ବୟସରେ । ଯୁବକ ନେତୃତ୍ୱର ନିର୍ଦ୍ଦେଶକୁ ମାନ୍ୟତା ଦେଉଥାନ୍ତି । ସେଇଦିନ ମୋର ମୁଣ୍ଡ ନଇଁଗଲା । ତାଙ୍କ ପାଦ ତଳେ । କି ଆଦର୍ଶ ସ୍ଥାନୀୟ ସେ !

ଆଉ ଏକ ଅଭିଜ୍ଞତା । ମୋର ସାନଝିଅ କଳ୍ପନାର ବାହାଘର ଅରୁଣ (ଡକ୍ଟର କୁମାର ମହାନ୍ତି, ମାୟାଧର ବାବୁଙ୍କ ଜ୍ୟେଷ୍ଠ ପୁତ୍ର) ସହିତ ହେବାକୁ ସ୍ଥିର ହୋଇଛି । ମାୟାଧର ବାବୁଙ୍କ ଘରେ । ମୋ ସାଙ୍ଗରେ ଅଛନ୍ତି ଗୋବିନ୍ଦ ମହାନ୍ତି ଓ ଦୁର୍ଗାଚରଣ ମହାନ୍ତି । ଅନ୍ୟ ଦିଗରେ ରାଧାକୃଷ୍ଣ ସ୍ୱାଇଁଙ୍କ ସହିତ ଭୁବନବାବୁ ପ୍ରମୁଖ । ମୁଁ ପଚାରିଲି କିଏ ଆଉ ଦେବାକୁ ହେବ । ସରିଗଲା ସବୁକଥା । ଅଗ୍ନିଶର୍ମା ସେ ! ''ତୁ କଣ କହୁଛୁ'' ? ''ଏ ଗାଁଟାକୁ ତୁ କଣ କିଣି ଦେବୁ ?'' ୪୦ ବର୍ଷ ଧରି ଯାହା ହୋଇନାହିଁ, ତୁ କଣ ପାଇଛୁ କି ?'' ନା, କିଛି ନୁହେଁ ! ''ପାଟପୁରରେ ନିୟମ, ଶୃଙ୍ଖଳା, ତାର ସଂସ୍କୃତି ! ସବୁ ସ୍ୱତନ୍ତ୍ର ।'' ମୁଁ ଲଜ୍ଜିତ ହେଲି । ଅଥଚ ମୁଁ ଗର୍ବିତ ହେଲି । ଏଇ ମୋର ନେତା, ପାର୍ଟିର ନେତା, ଅମୂଲ୍ୟ, ଅପୂର୍ବ, ଆଦର୍ଶ ସ୍ଥାନୀୟ ।

ଶ୍ରେଷ୍ଠ ମଣିଷଟିଏ ! କି ସୌମ୍ୟ ! କି ଆଦର୍ଶ ! କି ମହାନ । ମଣିଷ ପର ମଣିଷଟିଏ । ନମସ୍ୟ ସିଏ ।



# ଏକ ସ୍ମରଣୀୟ ବ୍ୟକ୍ତିତ୍ୱ

● ଶ୍ରୀ ବୈକୁଣ୍ଠନାଥ ମହାନ୍ତି

ଜନ୍ମ ହେଲେ ମୃତ୍ୟୁ ଅଛି । ମୃତ୍ୟୁ ଥିଲେ ଜନ୍ମ ଅଛି—ଗୀତାର ଏହି ମହାନ ଶାଶ୍ୱତ ବାଣୀକୁ କେହି କସ୍ମିନ କାଳେ ଅସ୍ୱୀକାର କରି ପାରିବେ ନାହିଁ । ମୃତ୍ୟୁ ପରେ ଯେଉଁ କେତେ ଜଣ ମହାନ ବ୍ୟକ୍ତି ସମସ୍ତଙ୍କ ହୃଦୟ ସିଂହାସନରେ ସ୍ଥାନ ପାଇଥାଆନ୍ତି ସେମାନେ ମରି ମଧ୍ୟ ଅମର । କାଳ ସେମାନଙ୍କ କୀର୍ତ୍ତି କଳାପକୁ କେବେ କବଳିତ କରିପାରେ ନାହିଁ । ଆହାର, ବିହାର, ନିଦ୍ରା, ମୈଥୁନ, ଭୟ, ଇତ୍ୟାଦି ପଶୁର ଅଛି ମଣିଷର ମଧ୍ୟ ଅଛି । ମାତ୍ର ଏହି ସାଧାରଣ ଧର୍ମ ବ୍ୟତୀତ ଯେଉଁ ଆତ୍ମାରେ ଅମରତ୍ୱ ଭାବ ବିକଶି ଉଠେ ସେମାନେ ସଦା ସ୍ମରଣୀୟ । ସେହି ପ୍ରତିଭାର ଅଧିକାରୀ ହେଉଛନ୍ତି ସ୍ୱର୍ଗୀୟ ଗଡକୃଷ୍ଣ ସ୍ୱାଇଁ ।

ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାବରେ, ଗାନ୍ଧୀଙ୍କର ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ମହାଶୟ ଜନସେବା ବ୍ରତ ନେଲେ । କାକଟପୁର ନିର୍ବାଚନ ମଣ୍ଡଳୀର ଜନ ସାଧାରଣଙ୍କର ଯେଉଁ ହିତ ସାଧନ କରି ଯାଇଛନ୍ତି ତାହା ଅବିସ୍ମରଣୀୟ । ପୂର୍ବତନ ବିଧାୟକ ଭାବେ ତାଙ୍କର ମହତ୍ୱପୂର୍ଣ୍ଣ କର୍ମ, ସାଙ୍ଗଠନିକ କାର୍ଯ୍ୟାବଳୀ, ଶୃଙ୍ଖଳିତ ଆଚରଣ ବ୍ୟବହାର ଓ ପରୋପକାର ପ୍ରବୃତ୍ତି ତାଙ୍କ ପ୍ରତିଭାକୁ ମହାନ କରି ଗଢ଼ି ତୋଳିଛି କହିବା ବାହୁଲ୍ୟ ମାତ୍ର । ମୁଁ କାକଟପୁର ହାଇସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ମହାଶୟଙ୍କର ସଭା ସମିତିରେ ପ୍ରଦତ୍ତ ଭାଷଣ ଓ ସାଙ୍ଗଠନିକ କାର୍ଯ୍ୟକୁ ନିରୀକ୍ଷଣ କରିଛି । କାକଟପୁର ନିବାସୀ ସେଇ ଅମର ଆତ୍ମାଙ୍କ ସଂସ୍ପର୍ଶରେ ଯେ ଥରେ ଆସିଛି ସେ ତାଙ୍କୁ କେବେ ଭୁଲି ପାରିବ ନାହିଁ ।

ମଙ୍ଗଳା ମହାବିଦ୍ୟାଳୟ ପରିଚାଳନା କମିଟିର ସେ ସଭ୍ୟ ଥିଲେ । ହାଇସ୍କୁଲ ପରିସର ମଧ୍ୟରେ ଯେତେବେଳେ କଲେଜ ଚାଲୁଥିଲା ସେ ସମୟରେ ସେ ସକ୍ରିୟ ଅଂଶ ଗ୍ରହଣ କରି ଲୋକମାନଙ୍କ ପାଖକୁ ଯାଇ କଲେଜ ନିମନ୍ତେ ଚାନ୍ଦା ସଂଗ୍ରହ କରିଛନ୍ତି । ବହୁ ଘାତ ପ୍ରତିଘାତ ମଧ୍ୟରେ କଲେଜ ଗଠନ ଦିଗରେ ତାଙ୍କର ଉଦ୍ୟମ ଯଥାର୍ଥରେ ପ୍ରଶଂସନୀୟ । ସମସ୍ତଙ୍କ ମଧ୍ୟରେ ସଦ୍‌ଭାବ ଆଣି ସମନ୍ୱୟ ରକ୍ଷାକରି ଅଧ୍ୟାପକ, ଅଭିଭାବକ ଓ ପରିଚାଳନା କମିଟିର ସଭ୍ୟମାନଙ୍କ ମଧ୍ୟରେ ସଂହତିର ଯୋଗସୂତ୍ରକାରୀ ଭାବେ ତାଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା ବୋଲି ମୁଁ ମୋର ବନ୍ଧୁମାନଙ୍କଠାରୁ ଶୁଣିବାକୁ ପାଇଛି । ମଙ୍ଗଳା ମହାବିଦ୍ୟାଳୟର ପୂର୍ବତନ ସଭାପତି ସ୍ୱର୍ଗୀୟ ଘନଶ୍ୟାମ ବଡ଼ିଆରୀଙ୍କ ଦୃଢ଼ ଆଶା ଓ ବିଶ୍ୱାସ ଗଡବାବୁଙ୍କ ଉପରେ ଏପରି ଦୃଢ଼ ଥିଲା ଯେ କୌଣସି କଥା ତାଙ୍କ ସହିତ ପରାମର୍ଶ ନ କରି କରୁ ନଥିଲେ । କମ୍ୟୁନିଷ୍ଟପାର୍ଟିର ଜଣେ ଅଭିଜ୍ଞ ନେତା ଭାବରେ ସେ କାର୍ଯ୍ୟ କରିବା ସହିତ ମାର୍କସଙ୍କ ସାମ୍ୟବାଦ ନୀତି ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ । ମଙ୍ଗଳା ମହାବିଦ୍ୟାଳୟକୁ ଏକ ଆଦର୍ଶ ଅନୁଷ୍ଠାନରେ ଗଢ଼ି ତୋଳିବା ପାଇଁ ତାଙ୍କର ସ୍ୱପ୍ନ ଥିଲା । ଗତ ବର୍ଷ ତା ୨୫।୪।୯୩ର ପୁଣ୍ୟ ଅକ୍ଷୟତୃତୀୟାରେ ତାଙ୍କର ମହାପ୍ରୟାଣ ଘଟିଗଲା । ମାତ୍ର ତାଙ୍କର ଆଦର୍ଶ, ତ୍ୟାଗ, ନିଷ୍ଠା, କର୍ତ୍ତବ୍ୟବୋଧ ଯୁବସମାଜର ଆଦର୍ଶ ହେଉ, ଏହାହିଁ ଆନ୍ତରିକ କାମନା । ସେହି ମହାନ କର୍ମବୀରଙ୍କ ଅମ୍ଳାନ ସ୍ମୃତି ସ୍ମରଣରେ ଦେହ, ମନ ଓ ପ୍ରାଣରେ ଏକ ଅପୂର୍ବ ଭାବାବେଗ ସୃଷ୍ଟି ହୁଏ । ସେହି ମହାନ ଆତ୍ମାଙ୍କ ପ୍ରତି ମୁଁ ମୋର ଭକ୍ତି କୁସୁମାଞ୍ଜଳି ଅର୍ପଣ କରୁଛି । ଜଣେ ଇଂରାଜୀ କବିଙ୍କ ଉକ୍ତି ମନେ ପଡ଼େ । Glory is the sun shine of the dead.

ଅଧ୍ୟକ୍ଷ, ମଙ୍ଗଳା ମହାବିଦ୍ୟାଳୟ,
କାକଟପୁର, ଜି: ପୁରୀ

# ଏକ ସଂପୂର୍ଣ୍ଣ ସମର୍ପିତ ଜୀବନ

● ଚିନ୍ତାମଣି ପାଣିଗ୍ରାହୀ
ପୂର୍ବତନ ରାଜ୍ୟପାଳ, ମଣିପୁର

ସ୍ୱର୍ଗୀୟ ଗତିକୃଷ୍ଣ ସ୍ୱାଇଁଙ୍କ ନିକଟ ସମ୍ପର୍କରେ ଆସିବାର ସୁଯୋଗ ପାଇଲି ୧୯୫୭ ମସିହାରେ । ଯା ଭିତରେ କେତେବେଳେ ଯେ ପଇଁତିରିଶ ବର୍ଷ ଅତିବାହିତ ହୋଇଗଲାଣି ଭାବି ହେଉନାହିଁ । ସେ ଯୁଗର ଆଜି ଜଣେ ସଂଗ୍ରାମୀ ନେତା ହରିହର ଦାସ ମଧ୍ୟ ଏବେ ଚାଲିଗଲେ ।

୧୯୫୭ ମସିହାରେ ଯେତେବେଳେ ସ୍ୱର୍ଗୀୟ ବାଳକୃଷ୍ଣ କରଙ୍କ ପ୍ରତିଷ୍ଠିତ ଦୈନିକ ମାତୃଭୂମିର ସମ୍ପାଦନା କାର୍ଯ୍ୟ କରୁଥାଏ ସେ ସମୟରେ ଓଡ଼ିଶାର ନେତୃସ୍ଥାନୀୟ କମ୍ୟୁନିଷ୍ଟ ବନ୍ଧୁମାନେ ବାଳକୃଷ୍ଣ କରଙ୍କୁ ବାରମ୍ବାର ଭେଟି ମୋତେ ମାତୃଭୂମି ସମ୍ପାଦନା କାର୍ଯ୍ୟରୁ ଅବ୍ୟାହତି ଦେଇ ଲୋକସଭା ନିର୍ବାଚନରେ ପ୍ରାର୍ଥୀ ହେବାକୁ ଅନୁରୋଧ କରିବାରେ ପିତୃପ୍ରତିମ ସ୍ୱର୍ଗୀୟ କର ତାଙ୍କର ଅନିଚ୍ଛା ସତ୍ତ୍ୱେ ମୋତେ ଆଶୀର୍ବାଦ ଦେଇ ନିର୍ବାଚନକୁ ଛାଡ଼ି ଦେଇଥିଲେ । ଗୋଟିଏ ଲୋକସଭା ନିର୍ବାଚନ ମୋତେ ସାଇକଲରେ ଲଢିବାକୁ ପଡ଼ିଥିଲା ।

ସ୍ୱର୍ଗୀୟ ଗତିକୃଷ୍ଣ ସ୍ୱାଇଁ, ମୋହନ ଦାଶ ସୋମନାଥ ପାଣ୍ଡ ଏବଂ ଅନ୍ୟ ସହଯୋଗୀ ବନ୍ଧୁମାନଙ୍କ ସହିତ କାକଟପୁର ଅସ୍ତରଙ୍ଗ ଅଞ୍ଚଳର ବହୁ ଗାଁ ଚାଲି ଚାଲି ବୁଲିଛି ।

କାକଟପୁର ଅଞ୍ଚଳରେ ସେ ସମୟରେ ଯେଉଁ କେତେଜଣ ବୀର ସଂଗ୍ରାମୀ ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ମୁକ୍ତି ସଂଗ୍ରାମର ବହ୍ନି ଜାଳିଥିଲେ ସେମାନଙ୍କ ମଧ୍ୟରେ ଲୋକନେତା ସ୍ୱର୍ଗୀୟ ଗତିକୃଷ୍ଣ ସ୍ୱାଇଁ ଥିଲେ ଅନ୍ୟତମ । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ତାଙ୍କର ସଂଗ୍ରାମ ଶେଷ ହୋଇ ନଥିଲା । ସାରା ଜୀବନ ସେ ଥିଲେ ସଂଗ୍ରାମୀ । ଗ୍ରାମାଞ୍ଚଳର ଅଗଣିତ କୃଷକ ଶ୍ରେଣୀ ଓ ଦରିଦ୍ର ଜନସାଧାରଣ ଯେଉଁସବୁ ଶୋଷଣ, ଓ ଦାରିଦ୍ର୍ୟ ଓ ଅନାଟନର କଷଣରେ ଜର୍ଜରିତ ହେଉଥିଲେ ସେମାନଙ୍କୁ ସେସବୁ କଷଣରୁ ମୁକ୍ତ କରିବାପାଇଁ ସେ ସତତ ସଂଗ୍ରାମରତ ଥିଲେ । ଦରିଦ୍ର ଜନସାଧାରଣଙ୍କ ପାଇଁ ସଂଗ୍ରାମରେ ସେ ତାଙ୍କ ଜୀବନର ସାର୍ଥକତା ଅନୁଭବ କରୁଥିଲେ ।

ତାଙ୍କର ସରଳ ଜୀବନ, ସାଧୁତା, ବିନୟୀ ଭାବ, ଅନ୍ୟକୁ ଆପଣାର କରିନେବାର ବନ୍ଧୁସୁଲଭ ଗୁଣ, ଆଚାର, ବ୍ୟବହାର; ଲୋକଙ୍କ ଦୁଃଖରେ ସାମିଲ ହୋଇ ହସି ହସି କଷ୍ଟ ବରଣ କରିନେବାର ସାଧନା ମୋତେ ବିଶେଷ ଭାବରେ ପ୍ରଭାବିତ କରିଥିଲା ଏବଂ ଏବେ ମଧ୍ୟ ପ୍ରଭାବିତ କରୁଛି । ତାଙ୍କର ନିଃସ୍ୱାର୍ଥପର ଜୀବନକୁ ସେ ସମର୍ପିତ କରି ଦେଇଥିଲେ କୃଷକ ଶ୍ରେଣୀ ଓ ଦରିଦ୍ର ଜନସାଧାରଣଙ୍କର ସମୂହ କଲ୍ୟାଣ କାର୍ଯ୍ୟରେ ।

ତାଙ୍କ ସଙ୍ଗେ ଚାଲି ଚାଲି ଗାଁକୁ ଗାଁ ବୁଲିବା ସମୟରେ ପଥକ୍ଲାନ୍ତି ଦୂରପାଇଁ ନାନା ଗପ ସେ କହି ଚାଲନ୍ତି ତାଙ୍କର ଦୀର୍ଘ ସଂଗ୍ରାମୀ ଜୀବନର ଅଭିଜ୍ଞତାରୁ । ତାଙ୍କ ଗପ ସାଙ୍ଗକୁ ମୋହନ ଦାଶଙ୍କ ହାସ୍ୟ ରସାତ୍ମକ ବିଭିନ୍ନ ଘଟଣା । ଏହିଭଳି ବାଟ ସରିଯାଏ ।

ତାଙ୍କର ପଦଚିହ୍ନ କାକଟପୁର ଅସ୍ତରଙ୍ଗ ଅଞ୍ଚଳର ଧୂଳିମାଟିରେ ରେଖାଙ୍କିତ । ସେ ଅମ୍ଳାନ । ଆମେ ତାଙ୍କୁ ସବୁବେଳେ ମନେ ପକାଇବା । ସେ ଥିଲେ ସଂଗ୍ରାମ ଓ କର୍ମପ୍ରେରଣାର ଅଫୁରନ୍ତ ଉତ୍ସ । ଆଗକୁ ତ ଆହୁରି ଅଧିକ ସଂଗ୍ରାମ ଆସୁଛି । ସଂଗ୍ରାମୀ ଆମ ଭିତରୁ ଚାଲିଯାଇଛନ୍ତି ସତ । କିନ୍ତୁ ତାଙ୍କ ରଚିତ ସଂଗ୍ରାମ ତ ଶେଷ ହୋଇ ନାହିଁ । ତେଣୁ ଅବକାଶ ନାହିଁ ।

●

## ଶୋକାଞ୍ଜଳି

● ବିଶ୍ୱମ୍ଭର ପରିଡ଼ା

ରାଜ୍ୟର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗୀୟ ରତିକୃଷ୍ଣ ସ୍ୱାଇଁଙ୍କର ଗତ ୨୫ ତାରିଖରେ ପରିଣତ ବୟସରେ ଦେହାନ୍ତ ହୋଇଯାଇଛି । ସ୍ୱର୍ଗୀୟ ସ୍ୱାଇଁ ଲବଣ ସତ୍ୟାଗ୍ରହଠାରୁ ଆରମ୍ଭ କରି ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ପର୍ଯ୍ୟାୟରେ ସକ୍ରିୟ ଅଂଶଗ୍ରହଣ କରି ବହୁବାର କାରାବାସ ଭୋଗ କରିଥିଲେ । ତାଙ୍କର ଦୀର୍ଘ ୬୦ ବର୍ଷ କୃତରେ ନିଷ୍ପେଷିତ ଅବହେଳିତ ଅସହାୟ ଶ୍ରେଣୀର ଲୋକଙ୍କ କଲ୍ୟାଣ ସାଧନ ପାଇଁ ସେ ଯେପରି ସାଲିସହୀନ ସଂଗ୍ରାମ ଚଳାଇ ଆସିଥିଲେ ତାହା ତାଙ୍କ ବିୟୋଗ ପରେ ସମଗ୍ର ରାଜ୍ୟପାଇଁ ବିଶେଷ କରି କାକଟପୁର ଅଞ୍ଚଳବାସୀଙ୍କ ପାଇଁ ଅପୂରଣୀୟ କ୍ଷତିଭାବେ ବିବେଚିତ ହେବ ।

ନିଷ୍କପଟ ସରଳ ନିରାଡ଼ମ୍ବର ବ୍ୟବହାର ସହିତ ନିଃସନ୍ଦେହ ସଙ୍କଳ୍ପବଦ୍ଧ ଲକ୍ଷ୍ୟସାଧନ ପାଇଁ ଅବିରତ ଉଦ୍ୟମ କଲାବେଳେ ବ୍ୟକ୍ତିଗତ ଅସୁବିଧାକୁ ଆଦୌ ଭ୍ରୂକ୍ଷେପ ନ କରିବା ତାଙ୍କ ଚରିତ୍ରର ବିଶେଷତ୍ୱ । ଏହା ପରବର୍ତ୍ତୀ କାଳର ସାଧାରଣସେବୀଙ୍କ ଜୀବନରେ ରୂପାୟିତ ହେଉ ଏହାହିଁ କାମନା ।

ତାଙ୍କର ସୁଦୀର୍ଘ ଅମ୍ଳାନ କୃତି ଓ ପବିତ୍ର ସ୍ମୃତିପ୍ରତି ମୁଁ ରାଜ୍ୟ ସ୍ୱାଧୀନତା ସଂଗ୍ରାମୀ ସମିତି ପକ୍ଷରୁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସଙ୍ଗେ ସଙ୍ଗେ ଶୋକସନ୍ତପ୍ତ ପରିବାର ଓ ସହକର୍ମୀମାନଙ୍କ ପ୍ରତି ହାର୍ଦ୍ଦିକ ସମବେଦନା ଜ୍ଞାପନ କରୁଛି ।

## ଗରିବାନ ରତିକୃଷ୍ଣ

● ଶ୍ରୀ ବୀରକିଶୋର ମହାନ୍ତି

କିଛିବି ପ୍ରସ୍ତୁତ ନଥିଲି
ସବୁକିଛି ବାକି ରହିଗଲା
ମୃତ୍ୟୁର ସେ ଠିକଣାଟା
ହଠାତ୍ କି ମନେପଡ଼ିଗଲା
ଆହେ ବର୍ଷୀୟାନ୍,
ତୁମେ ମହୀୟାନ୍ ।
ସବୁକିଛି ଆପଣାର ଡୋରି ଛିଣ୍ଡିଗଲା
ସବୁଠିକ ମୋହବତ ସୂତ ଫାଟିଗଲା
ଆହେ ଧୃତିମାନ
ତୁମକୁ ଗୋ କରୁଅଛୁ ସହସ୍ର ପ୍ରଣାମ ।
ସବୁକିଛି ସ୍ମୃତି ଓ ବିସ୍ମୃତିର ଲୁଚକାଳି ଖେଳ ସରିଗଲା
ସଂଗ୍ରାମର ବାଜଘର ଇଟାକାଠ ଭୁସୁଡ଼ି ପଡ଼ିଲା ।
ଆହେ ଗତିବାନ୍
ପ୍ରତିକଣ୍ଠେ ତୁମ ଜୟଗାନ ।
ତୁମପାଖେ ଥିଲା ଖାଲି ଶାନ୍ତି, ପ୍ରୀତି ସାମ୍ୟର ପସରା
ପ୍ରତାରଣା ଭେଲିକିରେ ନଥିଲା ସାଲିସ୍
ଆରେ କର୍ମବୀର
ମୁଗ୍ଧ ମନେ କରୁଅଛୁ ଶତ ନମସ୍କାର ।

ଅଧ୍ୟାପକ, ଓଡ଼ିଆ ବିଭାଗ,
● ମଙ୍ଗଳା ମହାବିଦ୍ୟାଳୟ, କାକଟପୁର

# ଭକ୍ତିପୂତ ଶ୍ରଦ୍ଧାଞ୍ଜଳି

● ପରଶୁରାମ ସ୍ୱାଇଁ

ସବୁଜ-ସୁନ୍ଦର
ଶ୍ୟାମଳ ବାଂଗଲର ମଣିଷଟିଏ,
ସେଇ ନରାଡ଼ମ୍ବର ମଣିଷର ଓଠରୁ
ହସ ଟିକକ ଛିଟିକ ପଡ଼ଲେ
ଫୁଟି ଉଠେ
ଲେଲନ୍ ଗ୍ରାଡ଼ର
ମାଟିରେ ମୂଳ ଲଗି ନଥିବା
ଝୁଲନ୍ତା ଗଛ ଲତାରେ
ଅନେକ ଅନେକ ଫୁଲ ଫଳର କାହାଣୀ,
ମାର୍କସୀୟ ଦର୍ଶନର
ଶ୍ରମ ଶକ୍ତିର ବନିଯୋଗ,
ଭାରତବର୍ଷର ଅର୍ଥନୀତି,
କାକଟପୁର ଠାରୁ
ଭୁବନେଶ୍ୱର ପର୍ଯ୍ୟନ୍ତ ଦୌଡ଼ ମାରୁଥିବା
ରାଜନୀତିକ ଘୋଡ଼ା,
ଗାଁ ମାଟି ପାଟପୁରର ସୁଖ-ଦୁଃଖ
ପୁଣି
ବ୍ୟକ୍ତିଗତ କଥା—
କଏ କେମିତି ଅଛୁ;
ଏମିତି କେତେ ଓ ଅନେକ
ସେଇ ଅହଂକାର ଶୂନ୍ୟ ମଣିଷଟିର
ଖୋଳ ଭିତରେ
ଥାକ ଥାକ ହୋଇ ସଜା ହୋଇଥିଲା ପରା
ମଣିଷ ଜାତିକ ଗଢ଼ିବାର ଏକଶତ କୋଣାର୍କ,
ସେଇ, ହସ ହସ ସରଳ ମଣିଷଟି ସହିତ
ମୋର ପ୍ରଥମ ସାକ୍ଷାତ ହୁଏ
ମରିଚପୁରର ଅନନ୍ତପୁର ଉ: ପ୍ରା: ବିଦ୍ୟାଳୟ ହତାରେ,
ତା'ପରେ——
ତା'ପରେ ୧୯୭୦/୭୧ରେ
ତାଙ୍କର ହାତଗଢ଼ା
ପାଟପୁର ମିଃ ଇଃ ସ୍କୁଲର ଶିକ୍ଷକ ଭାବରେ ।

ସେଇଠୁ ସମ୍ପର୍କ ବଢ଼ି ଉଠିଲା
ମୋ ହାତ ଅଞ୍ଜୁଳାରେ ଭରି ଦେଇ କହିଥିଲେ—
"ଅନ୍ଧାରରେ ହଜି ଯାଉଥିବା
ଏଇ ଓଡ଼ିଶା ମାଟିର ଶିଶୁ ପ୍ରାଣକୁ
ଏମିତି ଚକମିକ—ସଫା ସୁନ୍ଦର କରି
ଗଢ଼ି ପାରିବ ? ପାରିବ ତ ?"
ପ୍ରତିଶ୍ରୁତି କ'ଣ ଦେଇଥିଲି,
ତୁମ କଥା କେତେ ରଖିପାରିଛି,
ତା'ହା ଏବେ ବି ମୁଁ
ନିଜକୁ ନିଜେ ମାପି ପାରୁନି;
କିନ୍ତୁ
ଚେଷ୍ଟା କରୁଛି—
ଏକ କରି ଦେବାକୁ
ଆପଣାର କରି ନେବାକୁ ॥
ଆପଣାର କରି ନେଲି ଭଲ
ସେଇ ଚପଲ ପିନ୍ଧୁ ନଥିବା ମଣିଷଟିର
ପାଦଧୂଳି ମଥାରେ ମାରି
କେତେଥର ତାଙ୍କୁ ତାଙ୍କ ଘରେ
ତାଙ୍କ ଜୀବନୀ ମାଗିଛି—;
"ହିଁ—ହିଁ"—କହି
ଶେଷରେ 'ହିଁ' କୁ 'ନା'ରେ ରୂପାନ୍ତରିତ କରି
ସେ, ସେପାରିକି ଚାଲିଗଲେ ॥
ମୋର କିନ୍ତୁ ମନେ ପଡ଼ୁଛି
ତାଙ୍କର ଜେଲ-ଜୀବନର କରୁଣ କାହାଣୀ :
ଜେଲରୁ ଫେରିଲା ପରେ ତାହା ପୁଣି
ଆହୁରି କରୁଣତମ—
ସେଇ ସନାତନ-ପାଗଳ
ସ୍ତ୍ରୀଙ୍କର ଅକାଳ ମୃତ୍ୟୁ
ମାଣ୍ଡିଆ ଯାଉ ଆଉ ଲୁଣ ଲଙ୍କାରେ
ପରିବାରର ଅଶ୍ରୁଳ ଜୀବନ·········
ପାଟପୁର ଏ ଦୁଃଖ ଏ ଯନ୍ତ୍ରଣା

ସନ୍ଧି ପାରିନ ସେତେବେଳେ
ପାଳି କରି ପରିବାରକୁ ବଞ୍ଚାଇ ରଖିଛି;
ଗାଁରୁ କେତେଜଣ
ଜେଲଖାନାରେ ତାଙ୍କୁ ସାକ୍ଷାତ କରି
ନିବେଦନ କରିଛନ୍ତି—
"ଇଂରେଜ ସରକାର ସାମ୍ନାରେ
ମଥା ଅବନତ କରି, ଘରକୁ ଫେରି ଆସିବାକୁ ।"
ଘଡ଼ଘଡ଼ିର ରୁକ୍ଷ-ଦାରୁଣ କଣ୍ଠରେ
ଶୁଣାଇ ଦେଇଥିଲି—
"ମୁଁ ତ ବହୁ ଆଗରୁ ମରିଯାଇଛି ବୋଲି
ମୋର ପରିବାରକୁ ଜଣାଇ ଦେଇଛି ।"
ବାସ୍ତବରେ
ଏଇକଥା ଭାବି ବସିଲେ
ମନେହୁଏ
'ପୂର୍ଣ୍ଣାନନ୍ଦ' ଯଦି ଅନ୍ତରଙ୍ଗ-ଗାନ୍ଧୀ ହେଲେ
ତେବେ ସେଇ ଦେବତା ପରି ମଣିଷଟି 'ଗଣକୃଷ୍ଣ'
କାକଟପୁରର ଗୋପବନ୍ଧୁ ନୁହନ୍ତି କି ?
କାକଟପୁରର ଗୋପବନ୍ଧୁ ଭାବେ
ଆମେ ଉଦାତ୍ତ କଣ୍ଠରେ ଘୋଷଣା କରି
ଗର୍ବିତ ଓ ଗୌରବତ ହେବାନି କି ?
ସେ ଏ ମାଟିରେ ଛୁଞ୍ଚି ଛୁଞ୍ଚି ଯାଇଥିବା
ଫାଲ୍‌ଗୁନ-ଫୁଲର ମହକରେ
ଆମେ ସବୁଦିନ ପାଇଁ ତାଙ୍କୁ ଖୋଜିବାନି ?
ଖୋଜିବାନି—ସେ ଆମ ଭିତରେ ଆଉଥରେ ରହନ୍ତୁ !
ଆମକୁ ପୁଣି ଆଗେଇ ନିଅନ୍ତୁ
ଅନ୍ଧାରରେ ଆଲୋକର ସ୍ପର୍ଶ ଦେଇ
ପୁଣି ଫେରି ଆସନ୍ତୁ—ପୁଣି ଫେରି ଆସନ୍ତୁ ! ! !



ପାଟଳଦା ମିଃ ଇଃ ସ୍କୁଲ

# ଜନ୍ମମାଟିର ଜାଗ୍ରତ ପ୍ରହରୀ

• ଚୂଡ଼ାମଣି ସ୍ୱାଇଁ
ପୂର୍ବତନ ପ୍ରଧାନ ଶିକ୍ଷକ, ଅସ୍ତରଙ୍ଗ ହାଇସ୍କୁଲ

ତୁମେ ଥିଲ ସର୍ବହରାର ସାଥି ଓ ସର୍ଦ୍ଦାର । ତୁମର କର୍ମକ୍ଷେତ୍ର ସମଗ୍ର ଓଡ଼ିଶା ମାଟିରେ ପରିବ୍ୟାପ୍ତ ଥିଲେ ହେଁ କାକଟପୁର ଅଞ୍ଚଳର ଅଗଣିତ ଜନମାନସକୁ ଗୋଟିଏ ସୂତ୍ରରେ ବାନ୍ଧିରଖି ତୁମର ଐନ୍ଦ୍ରଜାଲିକ ତଥା ଚୁମ୍ବକୀୟ ବ୍ୟକ୍ତିତ୍ୱର ପରିଚୟ ଦେଇପାରିଛ ।

ଆଜି ବି ସେ ସୂତ୍ର ଶତ ଶତ ଘାତ ପ୍ରତିଘାତ ମଧ୍ୟରେ ସୁଦୃଢ଼ ଓ ଶକ୍ତିଶାଳୀ ।

ଆକୃତିରେ ତୁମେ ଥିଲ ବାଙ୍ଗିରି । ମାତ୍ର ତୁମର କ୍ଷିପ୍ର ଆଖି ପାଉନଥିବା ଚାଳଗଛ ପରି ଡେଙ୍ଗା ।

ବୌଦ୍ଧିକତା, ବିପ୍ଳବଶୀଳତା ଓ ମାନସିକ ବିଚକ୍ଷଣତାର ତୁମେ ଥିଲ ମୂର୍ତ୍ତ ପ୍ରତୀକ । ସମଗ୍ର କୃଷୀ ମୂଲିଆ, ଶ୍ରମିକ ଓ ସର୍ବହରା ଗୋଷ୍ଠୀ ଥିଲେ ତୁମର ପରିବାର । ତୁମର ଜୀବନ ଇତିହାସ ଲୁହ ଓ ଲହୁର ଇତିହାସ । ବନ୍ଦୀଶାଳାରେ ତୁମେ ଦେଖିଛ ମାନବ ମୁକ୍ତିର ସ୍ୱପ୍ନ । ଶୋଷଣ-ସାଗରରେ ତୁମେ ଥିଲ ଏକ ଅମାନିଆ ପ୍ରଳୟଙ୍କରୀ ଝଡ଼ । ତୁମ ଜୀବନରେ ପଛଘୁଞ୍ଚା ନଥିଲା, ପ୍ରାଣରେ ନଥିଲା କାତରତା, ଆଉ ଆତଙ୍କ ।

ଯୌବନରେ ଝାସ ଦେଇଥିଲ ଅନ୍ଧକାରମୟ ଆବର୍ତ୍ତ ମଧ୍ୟକୁ, ଆଶାର ଆଲୋକ ନେଇ ବିପ୍ଳବର ବହ୍ନିମାନ ଶିଖା ନେଇ, ସାଧନାର ଶାଣିତ ଶାୟକ ନେଇ । ସେ ଆଖିରେ ନଥିଲା ଛଳନାର ଅଶ୍ରୁ । ଦୁଃସ୍ଥ, ଦୁର୍ଗତ ଓ ଦୁର୍ଦ୍ଦଶାଗ୍ରସ୍ତ ମଣିଷ ପାଇଁ ଅଶ୍ରୁ ତୁମର ଅଗ୍ନିରେ ରୂପାନ୍ତରିତ ହୋଇଛି । ସେ ଅଗ୍ନି ବିପ୍ଳବର ଓ ବିଦ୍ରୋହର ।

ଅଳସ-ନଶିର ବିଳାସ ସପନ ତୁମେ କେବେ ବି ଦେଖିନ । ତୁମର ଦୃପ୍ତ-ଦୀପ୍ତିରେ ଧନକୁବେର ନିଶା, ବାଦଲ ପରିବୃତ୍ତ ନଭରେ ଥରି ଥରି ଲିଭିଯାଇଛି । ରକ୍ତ-ପ୍ରହରର ଆଗମନର ଆଶଙ୍କାରେ ତୁମେ ଅଠର ବର୍ଷର ନୂଆନ୍ ଟୋକାଙ୍କଠାରୁ ଆରମ୍ଭ କରି ଅଠାଅଶୀ ବର୍ଷର ଅଣ୍ଟାଭଙ୍ଗା ବୁଢ଼ା ପ୍ରାଣରେ ଅସରନ୍ତି ଉନ୍ମାଦନା ଖେଳାଇ ଦେଇଛ । ଏ ଅଞ୍ଚଳର ସମସ୍ତ କୃଷୀ ମୂଲିଆ ଶୋଷିତ ସର୍ବହରା ତୁମର ସ୍ନେହ ସହାନୁଭୂତିକୁ କରଜ କରିଛନ୍ତି । ତୁମରି ଆଦର୍ଶ, ନୀତି ଓ ଚିନ୍ତାଧାରାକୁ ବାସ୍ତବରେ ରୂପାୟନ କଲେ, ସେ କରଜ କିଛିଟା ସୁଝିପାରିବେ ।

କୃଷୀ ମୂଲିଆର ଇତିହାସ ଲେଖା ଯାଇଛି ତୁମ ଲୁହ ଓ ଲହୁରେ ସେମାନଙ୍କର ବିକାଶ ରୂପପାଇଛି । ତୁମରି ସରି ସରି ଆସୁଥିବା ଆୟୁରେ କେତେ ସ୍ଥିତିର ଚାଡି ନେଇ ତୁମେ ଥିଲ ତପ୍ତ ଉତ୍ତପ୍ତ ।

ତୁମ ମୁହଁରେ ହସ ଥିଲା—କାନ୍ଦୁରା ମୁହଁରେ ହସ ଫୁଟାଇବା ପାଇଁ । କର୍ମଠତା ଥିଲା ପରିବାର ପାଇଁ ନୁହେଁ, ଅପାରୁଆ ମଣିଷ ପ୍ରାଣରେ ପାରିଲା ପଣିଆର ବିଶ୍ୱାସ ଆଣିବା ପାଇଁ । ଚେତଶୀଳତା ଥିଲା—

ଅଚେତନକୁ ଚେତାଇବା ପାଇଁ । ସାହସ ଥିଲା—ଦୁର୍ବଳକୁ ବଳଦେବା ପାଇଁ । ଦୟା ଥିଲା ଦୀନ ଦୁର୍ଗତଙ୍କ ପାଇଁ । ହୃଦୟ ଥିଲା—ଧନ ହତଭାଗ୍ୟଙ୍କ ପାଇଁ । ଘୃଣା ବିରୋଧ ଥିଲା ନିଷ୍ଠୁର—ବର୍ବର ପାଷାଣ୍ଡଙ୍କ ପାଇଁ ।

ଲହୁ ଓ ଲହୁରେ ଲେଖା ତୁମ ସଂଗ୍ରାମୀ ଜୀବନର ଘଟିଛି ଅବସାନ । ମାତ୍ର ତୁମର ସାଥୀ ଓ ଅନୁଗାମୀ ମାନେ ଗାହୁଁଛନ୍ତି—

ତୁମେ ଯଦି ସାଥି ଆସନ୍ତ ଫେରି
ସବୁ ସର୍ବହରା ପାଗଳ ହୋଇଣ ତୁମ ଘରପାଶେ ଯାଆନ୍ତେ ଘେରି
ଜଣାନ୍ତେ ପ୍ରାଣର ଅକୁହା ବେଦନା ସଞ୍ଚିତ ଯେତେ ହାହାକାର ।
ତୁମେ ଯଦି ସାଥି ଆସନ୍ତ ଫେରି ।

ଅବଶେଷରେ ମରଣ ତୁମର ଶରଣ ମାଗିଛି । ତୁମର ନଶ୍ୱର ଶରୀରର ଚିତା ହୁତୁ ହୁତୁ ହୋଇ ଜଳି ଉଠିଛି ମାତ୍ର କବି ସଚ୍ଚି ରାଉତରାୟଙ୍କ ଭାଷାରେ,—"ନୁହେଁ ବନ୍ଧୁ ନୁହେ ଏହା ଚିତା, ଏ ଜାତି ତମିସ୍ର ତଳେ ଯେଉଁସବୁ ମୁକତି ସଳିତା । ନୁହେଁ ଏହା ଜଳିବାର ପାଇଁ, ଏହାର ଜନମ ଏଥି ଜାଲପୋଡ଼ ଦେବାକୁ ଧପାଇ ।" ତୁମର ଆତ୍ମା ଚାହେଁନା, ଯୋଡ଼ହସ୍ତ ହୋଇ ତା'ର ସଦଗତି ନିମନ୍ତେ କେହି ପ୍ରାର୍ଥନା କରୁ । ତୁମର ଆଦର୍ଶ ଓ ନୀତିକୁ ତୁମର ଅବର୍ତ୍ତମାନରେ ଅନୁସରଣ କରିବାର ଆଗ୍ନେୟ ଶପଥ ଯଦି ଗ୍ରହଣ କରାଯାଏ, ତେବେ ଆତ୍ମା ସ୍ୱୟଂ ସ୍ୱୟଂ ସଦଗତି ପ୍ରାପ୍ତ ହୋଇଯିବ ।

ହେ ରକ୍ତ-ପ୍ରଭାତର ସ୍ୱପ୍ନ ବିଭୋର ସାଥୀ ! ସେଇ ଲେଲିହାନ ଚିତାର ଶିଖା ଉଦ୍ଦେଶ୍ୟରେ ଜଣାଇବେ ତୋର ଲାଲ୍ ସଲାମ । ଆଉ ପ୍ରତିଟି ସାଥିଙ୍କୁ କୁହ—
"ନୂଆଁରେ ତୋର ରକ୍ତ ଧ୍ୱଜା ଲାଲ୍ ପତାକା ଦେ' ନଇଁରେ
ନୟନମଣି ଚାଲିଯେ ଗଲା ଏ, ମାଟି ଛାଡ଼ି ବହୁତ ଦୂରେ
ଯାଇ ଆକାଶେ ଲଙ୍କା ତାରା, ସୂର୍ଯ୍ୟ ଯହିଁ ଝାଉଁଳି ପଡ଼େ,
ସେଇ ମାଟିରେ ନୂଆ ଦୁନିଆଁ ନିଅଁ ଯେ ଗଢ଼େ ନିଜର ହାଡ଼େ ।"

ନିଜ ହାଡ଼ରେ ଗଢ଼ା ନୂଆ ଦୁନିଆର ନିଅଁ ଏବେ ବି ସୌଧରେ ପରିଣତ ହୋଇନି । ସୌଧରେ ପରିଣତ କରିବାର ଦାୟିତ୍ୱ ଗତିବାବୁଙ୍କ ଉତ୍ତରପୁରୁଷଙ୍କର ।

—o—

# ସର୍ଦ୍ଦାର ଗତିବାବୁ

● ଅର୍ଜ୍ଜୁନ ଦାଶ

ସର୍ଦ୍ଦାର ଗତିବାବୁଙ୍କ ବିଷୟରେ ମୁଁ କ'ଣ ଲେଖିବି ବୋଲି ଭାବୁଛି, କିଛି ବିଶେଷ କରି ଲେଖିବା ମୋ ପକ୍ଷେ ଧୃଷ୍ଟତା ହେବ । ମୋ ବଡ଼ଭାଇ ବିଶ୍ୱମ୍ଭର ଦାଶ ପାଟପୁର ସ୍କୁଲରେ ଶିକ୍ଷକ ଥିବା ସମୟରେ ମୁଁ ପିଲାଦିନେ ପାଟପୁର ଜ· ପ୍ରା· ସ୍କୁଲରେ ପାଠ ପଢ଼ୁଥିଲି । ଗତିବାବୁ ସ୍କୁଲକୁ ବୁଲିବାକୁ ଆସନ୍ତି । ଦେଖିଛି ସେ ଏବଂ ତାଙ୍କ ବଡ଼ଭାଇ ସତ୍ୟାନନ୍ଦ ସ୍ୱାଇଁ ଆସି ସ୍କୁଲରେ ହାରମନିଆ ବଜାଇ ସଙ୍ଗୀତଗାନ କରନ୍ତି । ଆଉ କେତେଜଣ ସାଙ୍ଗରେ ଥାଆନ୍ତି । ତାଙ୍କର ପାଠପଢ଼ା କିପରି ହେଉଛି ଏବଂ ସ୍କୁଲ କିପରି ଚାଲୁଛି ତାହା ହେଡ୍ ପଣ୍ଡିତଙ୍କ ସହ ଆଲୋଚନା ଚାଲିଥାଏ । ମୁଁ ସେତିକି ଶୁଣିଥିବା ମନେ ପଡ଼ୁଛି ।

୧୯୪୨ ମସିହାରେ ଏ ଅଞ୍ଚଳରେ ଗତିବାବୁ କଂଗ୍ରେସ ବାଲା ଭାବରେ ଜେଲ ଗଲେ । ଜେଲରୁ ଫେରି ସେ ସମସ୍ତ କର୍ମୀଙ୍କ ସହ କମ୍ୟୁନିଷ୍ଟ ହୋଇଗଲେ ।

ଏ ଅଞ୍ଚଳରେ କଂଗ୍ରେସବାଲା ହୋଇ କେହି ନଥିବାରୁ ମୋତେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି କଂଗ୍ରେସ କାମ କରିବା ପାଇଁ କାକଟପୁର ନିର୍ବାଚନ ମଣ୍ଡଳୀକୁ ପଠାଇଲେ । ମୁଁ ଆସିବାରୁ ସାଧାରଣ କ୍ଷେତ୍ରରେ ଗତିବାବୁଙ୍କ ସହ ମୋର ଆଲୋଚନା କେତେକ କ୍ଷେତ୍ରରେ ହେଲା ।

ତାଙ୍କଠାରୁ ମୁଁ କେତେକ କଥା ଜାଣିନିଏ ଏବଂ ତାଙ୍କ ପରାମର୍ଶ ନେଉଥାଏ । ବିଶେଷ କରି ତାଙ୍କର ସାଙ୍ଗଠନିକ ଦକ୍ଷତା, ନିଷ୍ଠା ନ୍ୟାୟ ଓ ଦୃଢ଼ତା ନେଇ ମୁଁ ଆନ୍ତରିକ ଭଲପାଏ । ସେ ମୋତେ ସାନଭାଇ ପରି ଦେଖନ୍ତି । ଆମେ ସମସ୍ତେ ଗତିବାବୁଙ୍କୁ ସମ୍ମାନ ଦେଇ ସର୍ଦ୍ଦାର ବୋଲି ସମ୍ବୋଧନ କରୁ ।

ସେ ବିଧାନସଭାକୁ ଯିବାପାଇଁ ୧୯୫୨ ରେ ପ୍ରାର୍ଥୀ ହୋଇ ହାରି ଯାଇଥିଲେ । ୧୯୬୨ରେ ୨ୟ ଥର ବିଧାନସଭାକୁ ପ୍ରାର୍ଥୀହୋଇ ନିର୍ବାଚିତ ହେଲେ । ସେ ଥିଲେ ଜଣେ ଅମାୟିକ, କାହାରିକୁ ଖୁସାମତ୍ କରି କିଛି କାମ ହାସଲ କରିବା ତାଙ୍କର ନୀତି ବିରୁଦ୍ଧ । କାହାରିକୁ ଖୁସିକଥା କହି, କୌଣସି ସରକାରୀ କର୍ମଚାରୀଙ୍କୁ ଧମକ, ଚମକ ଦେଇ କାମ ହାସଲ କରିନାହାନ୍ତି ।

ଏଇ ଉତ୍କଳ ସଂସ୍କୃତି ସମିତି ଉପରେ ତାଙ୍କର କେତୋଟି କାରଣ ନେଇ ଅସନ୍ତୋଷ ଥିଲା । ମୁଁ ପ୍ରକାଶରେ ତାଙ୍କ ସହିତ ସାକ୍ଷାତ କରି ତାହା ଦୂରକରି ତାଙ୍କୁ ଆମର ଆନୁଷ୍ଠାନିକ ସଭା ମାନଙ୍କରେ ଯୋଗ ଦେବାପାଇଁ ନିମନ୍ତ୍ରଣ ଜଣାଇଲି । ନିମନ୍ତ୍ରଣ ରକ୍ଷାକରି ଯୋଗ ଦେଉଥିଲେ ।

ଥରେ ଏଇ ସମିତିର ଉନ୍ନତି ପାଇଁ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା କରୁଥାଏ । ସେ, ମୋତେ କହିଲେ ତୁମ ସାଙ୍ଗରେ ସୋମନାଥ (ପାଢ଼ି) ଅଛନ୍ତି ? ମୁଁ ହଁ କହିବାରୁ ସେ ଉତ୍ତର ଦେଲେ—ଯାଅ, ଦୁହେଁ ମିଶି ଉନ୍ନତି କର ।

( ୩୮ ପୃଷ୍ଠା ଦେଖନ୍ତୁ )

# ତମେ ନମସ୍ୟ

● ଦୁର୍ଗାଚରଣ ମହାନ୍ତି

ଗତିବାବୁ, ତମେ ଚାଲିଗଲ । ଚାଲିଯିବାଟା ଗୋଟାଏ ସ୍ୱାଭାବିକ କଥା । ଜନ୍ମ ହେଲେ ନିଶ୍ଚୟ ମରଣ ହୁଏ । ସେ ହିସାବରେ ତମେ ଗୋଟାଏ ବ୍ୟତିକ୍ରମ । ତମେ ଚାଲିଗଲେ ମଧ୍ୟ ଅମର ରହିବ । ସେଇଟା ହିଁ ତମ କ୍ଷେତ୍ରରେ ବିଶେଷତ୍ୱ ।

ତମ ଦେହ ବହୁତ ଖରାପ ଅଛି ବୋଲି ଶୁଣି ମୁଁ, ଗୁରୁଚରଣବାବୁ, ନନ୍ଦବାବୁ ଓ ଗୋବିନ୍ଦବାବୁ ତମକୁ ଦେଖିବାକୁ ଗଲୁ ତମ ଗାଁକୁ । ଆମେ ପାଞ୍ଚଜଣ ଗୋଟାଏ କିସମର ଲୋକ । ସମସ୍ତେ ସ୍ୱାଧୀନତା ସଂଗ୍ରାମୀ ଆମେ ସବୁ ଏକାଠି ହେଲେ ସ୍ୱାଧୀନତା ସଂଗ୍ରାମ ଯୁଗର କଥା ମନେ ପଡ଼େ । ତମେ ଆମ ଭିତରେ ଜଣେ ସର୍ଦ୍ଦାର । ଲୁଣ ମରା ବେଳେ ତମକୁ ଏହି ଉପାଧି ମିଳିଥିଲା । ବ୍ରିଟିଶ ସରକାର ରାୟ ବାହାଦୁର ଓ ରାୟ ସାହେବ ଉପାଧି ବ୍ରିଟିଶର ଗୋଲାମମାନଙ୍କୁ ଦେଉଥିଲେ । ସଭା ସମିତି ହେଲେ ସେମାନେ ମେଡ଼ାଲ ମାରି ପଗଡ଼ି ଓଳଆ ଟୋପି ପିନ୍ଧି ବାହାରନ୍ତି । ଆମେ ସ୍ୱାଧୀନତା ସଂଗ୍ରାମୀମାନେ ଠିକ୍ ଓଲଟା । ତମେ ତ ଖଣ୍ଡେ ହାପପାଣ୍ଟ ଓ ଲୁଗା ପିନ୍ଧିବା ଲୋକ । ଲୁଣମରା ବେଳେ ସର୍ଦ୍ଦାର ହିସାବରେ ହାପ୍ ପ୍ୟାଣ୍ଟ ପିନ୍ଧିଛ । ବ୍ରିଟିଶ ସରକାରର କେତେ ଜୁଲୁମ । ତା ସାଙ୍ଗକୁ ଜମିଦାର, ସାହୁକାର ଓ ପୁଲିସଙ୍କର କେତେ ତାଣ୍ଡବ । ସବୁ ଅତ୍ୟାଚାରକୁ ପାଣି କରି ତମେ ନେତୃତ୍ୱ ନେଇଛ ।

ପୁଣି ୧୯୪୨ରେ ସ୍ୱାଧୀନତା ସଂଗ୍ରାମର ଜୁଆର ଉଠିଲା । ଜେଲଖାନାରେ ଏବଂ ବିଶେଷ କରି ବ୍ରହ୍ମପୁର ଜେଲରେ ଆମେ ସମସ୍ତେ ରହିଲେ । ଜାତୀୟ କଂଗ୍ରେସର ଅର୍ଥନୈତିକ କାର୍ଯ୍ୟକ୍ରମ ତମର ଜ୍ୱଳନ୍ତ ଦେଶପ୍ରେମୀ ମନକୁ ପାଇଲା ନାହିଁ । ଶୋଷଣହୀନ ସମାଜ ପ୍ରତିଷ୍ଠା ଏବଂ ଦୁନିଆରେ ଏକ ନୂତନ ସମାଜ ବ୍ୟବସ୍ଥା ତାକୁ ଆନ୍ଦୋଳିତ କରୁଥିଲା । ୨ୟ ମହାଯୁଦ୍ଧରେ ହିଟ୍‌ଲରର ଫାସିବାଦ ବିରୁଦ୍ଧରେ ସୋଭିଏଟ୍ ୟୁନିଅନର ବୀରତ୍ୱପୂର୍ଣ୍ଣ ସଂଗ୍ରାମ ତମର ଉଜ୍ଜ୍ୱଳ ଦେଶ ପ୍ରେମକୁ ପ୍ରଭାବିତ କଲା । ତମେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲ । ତମର ପଦକ୍ଷେପ ଜେଲ ଭିତରେ ବହୁ ଦେଶ ପ୍ରେମୀକୁ ପ୍ରଭାବିତକଲା । ସେମାନେ ସମସ୍ତେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହେଲେ । ସେଭଳି ନେତାମାନେ ଦେଶ ଓ ଜାତିର ଅନ୍ୟ ଦିଗକୁ ମଜବୁତ କଲେ ।

ହୁଏତ ତମେ କଂଗ୍ରେସରେ ଥିଲେ ବ୍ୟକ୍ତିଗତ ଭାବରେ ମନ୍ତ୍ରୀ ହୋଇ ପାରିଥାନ୍ତେ । ଅନ୍ୟ କଂଗ୍ରେସ ନେତାଏ ବ୍ରହ୍ମପୁର ଜେଲ ବେଳଠାରୁ ଆରମ୍ଭ କରି ଅଦ୍ୟାବଧି ନିଜର ପଦପଦବୀ ବ୍ୟବହାର କରି ଧନ ସମ୍ପଦ ଠୁଳ କରିଛନ୍ତି । ଅର୍ଥ ଓ କ୍ଷମତାକୁ ବ୍ୟବହାର କରି ରାଜନୈତିକ ଜୀବନ ଓ ସାମାଜିକ ଜୀବନକୁ କଳୁଷିତ କରିଛନ୍ତି । କିନ୍ତୁ ତମେ ସେ ସହଜ ରାସ୍ତା ତ୍ୟାଗ କରି ଦଳର କମ୍ୟୁନିଷ୍ଟ ପାର୍ଟି ଜରିଆରେ କୃଷକ, ଶ୍ରମିକ ଓ ଖଟିଖିଆ ଲୋକମାନଙ୍କୁ ସଙ୍ଗଠିତ କରି ଭାରତୀୟ ସମାଜ ବ୍ୟବସ୍ଥା ଓ ଗଣତନ୍ତ୍ରକୁ ଲୋକାଭିମୁଖୀ କରାଇଲ । ସ୍ୱାଧୀନତା ହାସଲ ପରେ ପୁଣି ବିପ୍ଲବ ଆସିଲା । ଦେଶ ଓ ଗଣତନ୍ତ୍ରକୁ ବିପନ୍ନ କରିବା ପାଇଁ ଉଦ୍ୟମ ହେଲା । ତା ବିରୁଦ୍ଧରେ କମ୍ୟୁନିଷ୍ଟ ପାର୍ଟି ନିଷ୍ପତ୍ତି ଅନୁସାରେ ତମେ କଂଗ୍ରେସ ସରକାରର ଜନ ବିରୋଧୀ ନୀତି ଓ ଦୃଷ୍ଟିକୋଣର ବିରୋଧ କଲ । ପୁଣି ଥରେ ତମକୁ ପୁରୀ ଜେଲରେ ଅଟକବନ୍ଦୀ ଭାବରେ ରହିବାକୁ ପଡ଼ିଲା । ଅବସ୍ଥା ଚକ୍ରରେ ମୁଁ ବି ପୁରୀ ଜେଲକୁ ଅଟକବନ୍ଦୀ ଭାବରେ ଗଲି । ସେଠାରେ ତମର ଦୃଢ଼ତା ଓ ରାଜନୈତିକ ପରିପକ୍ୱତାର ମୁଁ ପରିଚୟ ପାଇଛି ।

ପୁଣି ତମକୁ ଗଣସଙ୍ଗଠନର ନାୟକ ଓ ବିଧାୟକ ଭାବରେ ଦେଖିବାର ସୁଯୋଗ ଆସିଛି । ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ଭାବରେ ପାଞ୍ଚବର୍ଷ ଥିଲା ବେଳେ ଦେଖିଛି ଓ ଅନୁଭବ କରିଛି ତମେ କେତେ ଶୃଙ୍ଖଳିତ ଓ ପରିପକ୍ୱ । ସଦାବେଳେ ତମେ ପାର୍ଟିକୁ ଗୋଟାଏ ନୀତିଗତ ଓ ସଠିକ ବାଟରେ ଚଳାଇବା ପାଇଁ ନିଜର ପ୍ରାଣପଣ ଉଦ୍ୟମ କରିଛ ।

ତୁମର ସବୁଠାରୁ ବଡ଼ ଗୁଣ ହେଉଛି ସମସ୍ତଙ୍କଠାରୁ ସଦ୍‌ଗୁଣ ଆହରଣ କରିବା । ତୁମେ ଜ୍ଞାନ ଓ ଗରିମାରେ ଶ୍ରେଷ୍ଠ ସ୍ଥାନରେ ଥିଲ । କିନ୍ତୁ ଔଦ୍ଧତ୍ୟ ନଥିଲା । ତୁମେ ଅନ୍ୟମାନଙ୍କଠାରୁ ନମ୍ର ଭାବରେ ଶିଖିବାର ଉଦ୍ୟମ କରିଛ । ସେହି ଗୁଣ ଅନ୍ୟମାନଙ୍କ ତୁମପ୍ରତି ସମ୍ମାନ ବଢ଼େଇଛି । ଏ କ୍ଷେତ୍ରରେ ଅନ୍ୟମାନଙ୍କଠାରୁ ତୁମେ ଏକ ବ୍ୟତିକ୍ରମ । ଏହା ତୁମକୁ ଅସାଧାରଣ କରିଛି ।

ଦେଶ ସ୍ୱାଧୀନ ହୋଇଛି । ତେବେ ବର୍ତ୍ତମାନ କଂଗ୍ରେସ (ଇ) ସରକାର ବିଶ୍ୱ ବ୍ୟାଙ୍କ ଏବଂ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ତଥା ଆମେରିକା ସାମ୍ରାଜ୍ୟବାଦୀଙ୍କ ଚାପରେ ଗ୍ୟାଟ ଚୁକ୍ତିରେ ସ୍ୱାକ୍ଷର କରିଛି । ଏହା ଫଳରେ ଦେଶର ସ୍ୱାଧୀନତା, ସାର୍ବ-ଭୌମତ୍ୱ ଓ ସ୍ୱାବଲମ୍ବନଶୀଳ ଅର୍ଥନୀତି ଉପରେ ବିରାଟ ବିପଦ ଆସିବ । ଜନସାଧାରଣ ବହୁ ବିପଦର ସମ୍ମୁଖୀନ ହେବେ । ଏହା ବିରୁଦ୍ଧରେ ପୁଣିଥରେ ସମସ୍ତ ଦେଶପ୍ରେମୀଙ୍କୁ ଜୁଟ କରି ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ କରିବା ଆବଶ୍ୟକ ପଡ଼ୁଥିଲା ବେଳେ ତୁମର ଅନୁପସ୍ଥିତି ଆମପାଇଁ ବହୁ ବାଧା ସୃଷ୍ଟି କରିବ ।

ତୁମେ ନମସ୍ୟ । ତୁମେ ଦେଶ ଓ ଜାତିକୁ ଏବଂ ଓଡ଼ିଶାକୁ ଊର୍ଦ୍ଧ୍ୱକୁ ନେଇଛ । ତୁମେ ଚାଲିଗଲେ ମଧ୍ୟ ସଦାବେଳେ ଅମର ରହିବ । ଉଜ୍ଜ୍ୱଳ ତାରକା ପରି ଦିଗବାରଣୀ ହେବ । ମୋର ଶେଷ ଜୀବନ ପର୍ଯ୍ୟନ୍ତ ମୁଁ ତୁମକୁ ଅନୁସରଣ କରିଚାଲିବ ।

●

ବାଦାମବାଡ଼ି, କଟକ

---

## ସର୍ଦ୍ଦାର ଗତିବାବୁ……

(୩୭ ପୃଷ୍ଠାର ଅବଶିଷ୍ଟାଂଶ)

ସେ ବିଧାୟକ ଥିଲାବେଳେ ଏ ଅଞ୍ଚଳରେ କେତେକ ଉନ୍ନତିମୂଳକ କାମ କାର୍ଯ୍ୟକାରୀ କରିଛନ୍ତି— ତନ୍ମଧ୍ୟରୁ କାକଟପୁର ଡାକ୍ତରଖାନା, ପ୍ରାଚୀନଦୀରେ ବଲସାଠାରେ ସେତୁ ନିର୍ମାଣ ଓ ଅନ୍ୟାନ୍ୟ କେତେକାର୍ଯ୍ୟ କରିଅଛନ୍ତି । କାକଟପୁର କଲେଜ ହେବାରେ ତାଙ୍କ ଉଦ୍ୟମ ପ୍ରଶଂସନୀୟ । ତାଙ୍କ ନିଷ୍ଠା ଓ ସାଧାରଣଙ୍କ ପାଇଁ ଅକ୍ଳାନ୍ତ ପରିଶ୍ରମ ଯୋଗୁ ସେ ବହୁଜନରେ ସମ୍ମାନିତ ହୋଇଅଛନ୍ତି ।

ମୋର ତାଙ୍କ ବିଷୟରେ ଅଧିକ କିଛି ଜ୍ଞାନ ନାହିଁ । ବହୁ ଶୁଭାକାଂକ୍ଷୀ ତାଙ୍କ ବିଷୟରେ ବହୁ ଲେଖା ଦେଇଥିବେ । ମୁଁ ତାଙ୍କ ପ୍ରତି ଗଭୀର ଭକ୍ତି ଓ ଶ୍ରଦ୍ଧାଞ୍ଜଳି ଦେଇ ରହୁଛି । ସେ ସ୍ୱର୍ଗରେ ଥାଇ ଆମର ଏହି ଅନୁଷ୍ଠାନକୁ ଆଶୀର୍ବାଦ କରନ୍ତୁ—

●

ସାଧାରଣ ସମ୍ପାଦକ
ଉତ୍କଳ ସଂଗ୍ରାମୀ ସ୍ମୃତି ସମିତି
କାକଟପୁର

# ଏକ ଉତ୍ସର୍ଗୀକୃତ ଜୀବନର ସଂକ୍ଷିପ୍ତ ଇତିବୃତ୍ତ

ଓଡ଼ିଶାର ବରେଣ୍ୟ ସ୍ୱାଧୀନତା ସଂଗ୍ରାମୀ, କୃଷକ ନେତା ସର୍ଦ୍ଦାର ଗଢକୃଷ୍ଣ ସ୍ୱାଇଁ ପୁରୀଜିଲ୍ଲା କାକଟପୁର ଅଞ୍ଚଳର ପାଟପୁର ଗ୍ରାମରେ ସନ ୧୩୧୫ ସାଲ କୁମ୍ଭ ୧୨ ଦିନ ଇଂରାଜୀ ୧୯୦୮ ମସିହା ଫେବୃୟାରୀ ୨୪ ତାରିଖ ଫାଲଗୁନ କୃଷ୍ଣପକ୍ଷ ସପ୍ତମୀ ରବିବାର ଦିନ ଏକ କୃଷକ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସିଦ୍ଧ ସ୍ୱାଇଁ ।

ଗ୍ରାମ୍ୟ ପାଠଶାଳାରେ ଅଧ୍ୟୟନ ସମାପ୍ତ ପରେ କାକଟପୁରରେ ଥିବା ଭର୍ଣ୍ଣାକୁଲର ସ୍କୁଲରେ ୧୯୨୦ରେ ଅଧ୍ୟୟନ କଲେ । ଏହି ସମୟରେ ବିଲାତ ସରକାର ଗାନ୍ଧିଜୀଙ୍କୁ ଗିରଫ କରିନେବାରୁ ତାହାର ପ୍ରତିବାଦରେ ଓଡ଼ିଶା ସ୍କୁଲ କଲେଜରେ ଛାତ୍ରମାନେ ଧର୍ମଘଟ କରିଥିବାରୁ ଶ୍ରୀ ଗଢବାବୁ ଓ ଅନ୍ୟାନ୍ୟ ଛାତ୍ରମାନେ ସ୍କୁଲ ବର୍ଜନ କରିଥିଲେ । ୧୯୨୦-୨୧ରେ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଲା । ଏହି ସମୟରେ ପଣ୍ଡିତ ଗୋପବନ୍ଧୁ ଦାସ କାକଟପୁର ଆସି ପାଟପୁର ଯାଇଥିଲେ । ଗୋପବନ୍ଧୁ ପାଟପୁରରେ ବିଲାତ ସରକାର ବିରୁଦ୍ଧରେ ଯେଉଁ ବକ୍ତୃତା ଦେଲେ ତାହାର ପ୍ରଭାବ ଗଢବାବୁଙ୍କ ଉପରେ ପଡ଼ିଲା । ଭର୍ଣ୍ଣାକୁଲର ପାଶ୍ ପରେ ଗଢବାବୁ ସାକ୍ଷୀଗୋପାଳରେ ପ୍ରତିଷ୍ଠିତ ଜାତୀୟ ବିଦ୍ୟାଳୟରେ ନାମ ଲେଖାଇଲେ । ବିଦ୍ୟାଳୟର ପରିବେଶ, ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଲିଙ୍ଗରାଜ ମିଶ୍ର, କୃପାସିନ୍ଧୁ ମିଶ୍ର, ନୀଳକଣ୍ଠ ଦାସ ପ୍ରଭୃତିଙ୍କ ବ୍ୟବହାରରେ ଗଢବାବୁ ବିଶେଷ ଆକୃଷ୍ଟ ହୋଇଥିଲେ । କ୍ରମେ ଗଢବାବୁ ଦେଶସେବା ଓ ଜନସେବା ପ୍ରତି ମନ ବଳାଇଥିଲେ । ବିଦ୍ୟାଳୟରେ ଅଧ୍ୟୟନ ସମୟରେ ଗଢବାବୁଙ୍କ ସହିତ ଓ ତାଙ୍କର ଉପର ଶ୍ରେଣୀରେ ଯେଉଁମାନେ ଅଧ୍ୟୟନ କରୁଥିଲେ ଓ ପରବର୍ତ୍ତୀ ସମୟରେ ଓଡ଼ିଶାର ମାନ୍ୟଗଣ୍ୟ ବ୍ୟକ୍ତିରୂପେ ଗଣ୍ୟ ହେଲେ ସେମାନେ ହେଉଛନ୍ତି— ୬ ଭଗବତୀ ଚରଣ ପାଣିଗ୍ରାହୀ, ମୋହନ ଦାସ, ଘନଶ୍ୟାମ ଦାସ, ଡକ୍ଟର ସଦାଶିବ ମିଶ୍ର, ଶ୍ୟାମସୁନ୍ଦର ମିଶ୍ର ପ୍ରଭୃତି । ଜାତୀୟ ବିଦ୍ୟାଳୟ ଭାଙ୍ଗିଯିବାରୁ ସେ ୧୯୨୬ରେ କଟକ ପ୍ୟାରୀମୋହନ ଏକାଡେମୀରେ ନାମ ଲେଖାଇ ୧୯୨୮ ପର୍ଯ୍ୟନ୍ତ ଅଧ୍ୟୟନ କଲେ । ଏହି ସମୟରେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ବାରଣ ସତ୍ତ୍ୱେ ମଧ୍ୟ କଟକରେ କରାଯାଉଥିବା କଂଗ୍ରେସ ସଭାରେ ଲୁଚିକରି ଯୋଗ ଦେଉଥିଲେ ।

୧୯୨୮ରେ ସାଇମନ କମିଶନର ବିରୋଧ, ଓ ଲାଲାଲଜପତ ରାୟଙ୍କ ଉପରେ ଲାଠିମାଡ଼ର ପ୍ରତିବାଦରେ ସବୁଆଡ଼େ ପ୍ରତିବାଦ ସଭା ଓ ଧର୍ମଘଟ । ଏହି ସମୟରେ କଲିକତା କଂଗ୍ରେସର ଯୁବଗୋଷ୍ଠୀମାନଙ୍କ ତରଫରୁ ଭାରତ ପୂର୍ଣ୍ଣ ସ୍ୱରାଜର ଦାବୀ ।

ଏହି ୧୯୨୮ରେ ଓଡ଼ିଶାର ପ୍ରବଳ ବନ୍ୟାରେ ବହୁ ଲୋକଙ୍କର ଘରଦ୍ୱାର ଭାଙ୍ଗିଯିବା ଯୋଗୁ ବହୁ ଲୋକ ବିପନ୍ନ ଓ ଅସହାୟ ହୋଇପଡ଼ିଥିଲେ । ଲୋକଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ କଟକର ରେଭେନ୍ସା କଲେଜର ଛାତ୍ରମାନେ ଗଣେଶ ପୂଜା ଉପଲକ୍ଷେ ଏକ ଡ୍ରାମା ଓ ଭୋଜିଭାତରେ ମାତିଥିଲେ । ଗୋପବନ୍ଧୁ ଦାସ 'ସମାଜ' ସମ୍ପାଦକୀୟରେ 'କୁଳ ବୁଡ଼ିଲାବେଳକୁ ଘୋଡ଼ାମୁହାଁ ପୁଅ ଜାତ' ଶିରୋନାମା ଦେଇ ଗୋଟିଏ ଲେଖା ପ୍ରକାଶ କରିଥିଲେ । ଏହି ଲେଖାଟିର ପ୍ରଭାବ ଗଢବାବୁଙ୍କ ଉପରେ ପଡ଼ିଥିଲା । ଏହାର କିଛିଦିନ ପରେ ଗୋପବନ୍ଧୁବାବୁ କେତେକ ଛାତ୍ରଙ୍କୁ ଡାକି ବନ୍ୟାରେ ସାହାଯ୍ୟ ବାଣ୍ଟିବାକୁ ଯିବା ନିମନ୍ତେ ପରାମର୍ଶ ଦେଇଥିଲେ । ତାଙ୍କର ପରାମର୍ଶରେ ଗଢବାବୁ କେତେକ ଛାତ୍ର ସାଥୀଙ୍କ ସହ ଆଳି, କନିକା, ପଟାମୁଣ୍ଡାଇକୁ ସାହାଯ୍ୟ ବାଣ୍ଟିବାକୁ ଯାଇଥିଲେ ।

ଏହି ୧୯୨୮ ମସିହାରେ କାକଟପୁର ନିକଟ ଦେଉଳି ମଠ ଠାରେ କଂଗ୍ରେସ ତରଫରୁ ଏକ ରାଜନୈତିକ ସମ୍ମିଳନୀ କରାଇଥିଲେ । ସେହି ସମ୍ମିଳନୀରେ କୃପାସିନ୍ଧୁ ହୋତାଙ୍କର ଓଜସ୍ୱିନୀ ବକ୍ତୃତା—''ଥାନା ଭୂତଖାନା, କଚେରୀ ଆମର ଘର, ଜେଲ୍‌ଖାନା ଆମର ଶ୍ୱଶୁରବାଡ଼ି, କୋନ୍ ଶାଲାକୁ ଡର'' ଗଢବାବୁଙ୍କୁ ସାହସ ଯୋଗାଇ ଜାତୀୟ ମୁକ୍ତି

ଆନ୍ଦୋଳନ ପ୍ରତି ଅଧିକ ଆକୃଷ୍ଟ କରାଇଥିଲା । ୧୯୨୮ରେ ଲାହୋର କଂଗ୍ରେସରେ ପୂର୍ଣ୍ଣସ୍ୱରାଜ ପ୍ରସ୍ତାବ ଓ ୧୯୩୦ରେ ଗାନ୍ଧିଜୀଙ୍କ ଲୁଣ ମରାପାଇଁ ଦାଣ୍ଡିଯାତ୍ରାର ଆନ୍ଦୋଳନ ଏବଂ ବିଭିନ୍ନ ନେତାମାନଙ୍କ ଜ୍ୱାଳାମୟୀ ବକ୍ତୃତା ଗତିବାବୁଙ୍କ ମନରେ ଖୁବ୍ ଉତ୍ସାହ ସୃଷ୍ଟି କରିଥିଲା ଓ ବ୍ରିଟିଶ୍ ବିରୋଧୀ ମନୋଭାବକୁ ତୀବ୍ର କରାଇଥିଲା । ୧୯୩୦ରେ ଗତିବାବୁ କଲେଜ ପାଠ ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ ।

୧୯୩୦ ଜାନୁଆରୀ ୨୬ ତାରିଖ ଭାରତ ସାରା ସ୍ୱାଧୀନତା ଦିବସ ପାଳିତ ହେଲା ଓ ଲବଣ ସତ୍ୟାଗ୍ରହର ଡାକରା ଦିଆଗଲା । ଗତିବାବୁ ଶପଥ ପତ୍ରରେ ସ୍ୱାକ୍ଷର ଦେଲେ ଓ ବାଲେଶ୍ୱରର ଇଞ୍ଚୁଡ଼ିକୁ ଲୁଣ ମାରିବାକୁ ବାହାରିଲେ । ତାଙ୍କର ବାପା ଏ ଖବର ପାଇ କଟକରେ ପହଞ୍ଚି ବାଧା ଦେଲେ ତଥାପି ସେ ବାପାଙ୍କ ବାରଣ ନମାନି ଇଞ୍ଚୁଡ଼ି ଗଲେ । ତାପରେ ଇଞ୍ଚୁଡ଼ିରୁ ଇରମ ଗଲେ ।

ଏହି ସମୟରେ କାକଟପୁରର ଅସ୍ତରଙ୍ଗ ଅଞ୍ଚଳ କୁହୁଡ଼ି କ୍ୟାମ୍ପରେ ଲୁଣମରା ଆନ୍ଦୋଳନରେ ସମସ୍ତ ସତ୍ୟାଗ୍ରହୀ ବନ୍ଦୀ ହୋଇଯିବାରୁ ଇରମରୁ ଅସ୍ତରଙ୍ଗ କ୍ୟାମ୍ପକୁ ଗତିବାବୁଙ୍କୁ ପଠାଗଲା । ସେ ଅସ୍ତରଙ୍ଗ ଆସି ଲୁଣମରା ଆନ୍ଦୋଳନ ପରିଚାଳନାର ନେତୃତ୍ୱ ନେଲେ । ୧୯୩୦ ଜୁନ୍ ମାସରେ କାକଟପୁରର ଓ କୁହୁଡ଼ି କ୍ୟାମ୍ପରୁ ଗିରଫ ହେଲେ । ବିଚାରରେ ପାଞ୍ଚମାସ ସଶ୍ରମ କାରାଦଣ୍ଡ ପାଇ ପୁରୀ ଜେଲ୍‌ରେ ବନ୍ଦୀ ହୋଇ ରହିଲେ ।

ସେତେବେଳେ ଜେଲଖାନାରେ ଲୁହା ବାଟିରେ ଖାଇବାକୁ ଦିଆଯାଉଥିଲା, ସେହି ଖାଇବା ବାଟିରେ ପାଣି ନେଇ ଝାଡ଼ା ଯିବାକୁ ହେଉଥିଲା । ଗତିବାବୁ ଏହାର ପ୍ରତିବାଦ କଲେ, ଜେଲ ପୋଷାକ ପିନ୍ଧିଲେ ନାହିଁ, କାମ କଲେ ନାହିଁ । ସେଥିପାଇଁ ଜେଲ ଭିତରେ ଥିବା ସେଲ ଭିତରେ ତାଙ୍କୁ ବନ୍ଦୀ କରି ରଖାଗଲା ।

ପାଞ୍ଚମାସ ଦଣ୍ଡ ଭୋଗକରି ମୁକ୍ତ ହେଲାପରେ ୧୯୩୧ ମସିହାରେ ଗଞ୍ଜେଇ, ଅଫିମ ଓ ବିଦେଶୀ ଲୁଗା ବିକ୍ରି ବିରୁଦ୍ଧରେ ପିକେଟିଂ ଆନ୍ଦୋଳନରେ ଯୋଗଦେଲେ । ପୁନଶ୍ଚ ୧୯୩୧ରେ ଲୁଣ ମରାଯିବାର ପ୍ରସ୍ତୁତି ଚାଲିଲା । କାକଟପୁରର ବିଭିନ୍ନ ଅଞ୍ଚଳରେ ଲୁଣମରା ପ୍ରସ୍ତୁତି କାର୍ଯ୍ୟ ଚଳାଉଥିବାରୁ ଦ୍ୱିତୀୟବାର ଗିରଫ ହୋଇ ଛଅମାସ ଜେଲ୍‌ଦଣ୍ଡ ଭୋଗିଲେ । ଗାନ୍ଧୀ ଇରଉଇନ ଚୁକ୍ତି ହେବାରୁ ୧୯୩୧ ମାର୍ଚ୍ଚମାସରେ ଖଲାସ ହେଲେ ।

ଜେଲ୍‌ରୁ ଖଲାସ ହେବାପରେ କାକଟପୁର ଅଞ୍ଚଳରେ ଜମିଦାରମାନଙ୍କ ଅତ୍ୟାଚାର ବିରୁଦ୍ଧରେ କୃଷୀମାନଙ୍କୁ ସଂଗଠିତ କରି କୃଷୀ ସମ୍ମିଳନୀ କରାଇଲେ । ମରିଚପୁର (ବର୍ତ୍ତମାନ କଟକ ଜିଲ୍ଲାର ବାଲିକୁଦା ଥାନାରେ) ଅଞ୍ଚଳରେ ଆଲି ରାଜାର ଜୁଲମ ବିରୁଦ୍ଧରେ ନହରଣାଠାରେ ପୁରୀଜିଲ୍ଲା ରାଜନୈତିକ ସମ୍ମିଳନୀ କରାଗଲା । ନୀଳକଣ୍ଠ ଦାସଙ୍କ ଉପରେ ୧୪୪ ଜାରି ହେବାରୁ ସେ ଆସିପାରିଲେ ନାହିଁ । ସୁନାମଣି ଦେବୀ ଏହି ସମ୍ମିଳନୀରେ ସଭାନେତ୍ରୀ ହୋଇଥିଲେ ।

୧୯୩୧ ଡିସେମ୍ବର ମାସରେ ସର୍ବଭାରତୀୟ କଂଗ୍ରେସ ଅଧିବେଶନ ପୁରୀରେ କରାଯିବା ପାଇଁ ସ୍ଥିର ହେଲା । ଅଭ୍ୟର୍ଥନା କମିଟି ଓ ସ୍ୱେଚ୍ଛାସେବକ ବାହିନୀ ଗଠନ ହେଲା । ଏହି ସ୍ୱେଚ୍ଛାସେବକ ବାହିନୀର ସେନାଧ୍ୟକ୍ଷ ଡକ୍ଟର ହରେକୃଷ୍ଣ ମହତାବ, ଉପସେନାଧ୍ୟକ୍ଷ ନବକୃଷ୍ଣ ଚୌଧୁରୀ ଥିଲେ । ଗତିବାବୁ ଏହି ସ୍ୱେଚ୍ଛାସେବକ ବାହିନୀର ଅଫିସର ମୁଖ୍ୟ ଦାୟିତ୍ୱରେ ରହିଥିଲେ । ଏହି ୧୯୩୧ରେ ଗାନ୍ଧିଜୀ ବିଲାତରେ ବସିଥିବା ୨ୟ ଗୋଲଟେବୁଲ ବୈଠକରୁ ଫେରିବା ସଙ୍ଗେ ସଙ୍ଗେ ତାଙ୍କୁ ଗିରଫ କରି ନିଆଗଲା ଓ କଂଗ୍ରେସକୁ ବେଆଇନ କରି ଦିଆଯାଇ ଚାରିଆଡ଼େ କଂଗ୍ରେସ ନେତା ଓ କର୍ମୀମାନଙ୍କୁ ଗିରଫ କରିନିଆଗଲା । ସମସ୍ତେ ଗିରଫ ହୋଇଯିବାରୁ ଗତିବାବୁଙ୍କୁ ଗୁପ୍ତବାସରେ ରହି କଂଗ୍ରେସ ସଂଗଠନ କାର୍ଯ୍ୟ ଚଳାଇ ରଖିବା ଦାୟିତ୍ୱ ବହନ କରିବାକୁ ପଡ଼ିଲା । ଗତିବାବୁ ଅଜ୍ଞାତବାସରେ ରହି ନିଜକୁ ଗତି ମିଶ୍ର ନାମ ବଦଳାଇ ପୁରୀଜିଲ୍ଲାରେ କଂଗ୍ରେସ ସଂଗଠନକୁ ବଞ୍ଚାଇରଖିବାରେ ଲାଗିପଡ଼ିଲେ । ପ୍ରସ୍ତର ନିଜେ ଲେଖି ଦେଉଥିଲେ ଓ ଗୁରୁଚରଣ ପଟ୍ଟନାୟକ ଲିଥୋ କରି ଯୋଗାଇଦେଉଥିଲେ । ଗୁପ୍ତ ଭାବରେ କଂଗ୍ରେସ ସଂଗଠନ କାର୍ଯ୍ୟ କରିବା, ପିକେଟିଂ ପରିଚାଳନା କରିବାରେ ଅଗାଧୁ ମହାପାତ୍ର, ଜଗନ୍ନାଥ ମିଶ୍ର ସାହାଯ୍ୟ କରୁଥିଲେ । ୧୯୩୨ ମସିହା ପ୍ରଥମ ଭାଗରେ ଦିଲ୍ଲୀରେ ସର୍ବଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନ ବସିଲା । ସ୍ୱରାଜ ଆଶ୍ରମର ନିର୍ଦ୍ଦେଶ ପାଇ ଗତିବାବୁ, ଗୁରୁଚରଣ ପଟ୍ଟନାୟକ ଓ ଅଗାଧୁ ମହାପାତ୍ର ଗୁପ୍ତ ବେଶରେ

ଟ୍ରେନ୍‌ରେ ଦିଲ୍ଲୀ ଯାତ୍ରା କଲେ । ବାଟରେ ପୁଲିସ ସନ୍ଦେହ କରି ଗିରଫ କଲେ । ଅଧିବେଶନ ଶେଷ ହେବା ପରେ ଛାଡ଼ିଦେଲେ ।

ଦିଲ୍ଲୀରୁ ଫେରି ପୁରୀରେ ପୁରୀଜିଲ୍ଲା ସମ୍ମିଳନୀ କରାଯିବା ସ୍ଥିର ହେଲା । ୫୦।୬୦ ଜଣ କର୍ମୀଙ୍କ ସହ ପୁରୀ ବଡ଼ଦାଣ୍ଡରେ ପଟୁଆର କରି ଯିବା ସମୟରେ ପୁଲିସ ଗିରଫ କଲେ । ବିଚାରରେ ୩ ମାସ ଜେଲ୍‌ଦଣ୍ଡ ମିଳିଲା । ତାଙ୍କୁ ପୁରୀଜେଲ୍‌ରୁ ପାଟଣା କ୍ୟାମ୍ପ ଜେଲ୍‌କୁ ପଠାଇ ଦିଆଗଲା ।

ଜେଲ୍‌ରୁ ଖଲାସ ହୋଇ ଆସିବା ପରେ ପୁନଶ୍ଚ ବିଦେଶୀ ଲୁଗା ବର୍ଜନ ପିକେଟିଂ ଆନ୍ଦୋଳନ କରାଗଲା । ଏହି ଆନ୍ଦୋଳନରେ ଗିରଫ ହୋଇ ଛଅମାସ ଜେଲ୍‌ଦଣ୍ଡରେ ଦଣ୍ଡିତ ହେଲେ । ଖୋର୍ଦ୍ଧା ଜେଲ୍‌ରେ କିଛିଦିନ ରଖାଯାଇ ପୁନଶ୍ଚ ପାଟଣା କ୍ୟାମ୍ପ ଜେଲ୍‌କୁ ପଠାଇଦିଆଗଲା । ୧୯୩୩ ମେ ମାସ ବେଳକୁ ଜେଲ୍‌ରୁ ଖଲାସ ହୋଇଆସିଲେ ।

ପାଟଣା କ୍ୟାମ୍ପ ଜେଲ୍‌ରେ ଥିବା ସମୟରେ ପୁରୀଜିଲ୍ଲାର କେତେକ ବନ୍ଦୀ "ଫ୍ରେଣ୍ଡସ୍ ସୋସାଇଟି" ଗଠନ କରିଥିଲେ । ଜେଲ୍‌ରୁ ଫେରିବା ପରେ ଏହି "ଫ୍ରେଣ୍ଡସ୍ ସୋସାଇଟି" ତରଫରୁ ପୁରୀରେ ଗୋଟିଏ ହୋଟେଲ କଲେ । ଜଗନ୍ନାଥ ମହାନ୍ତି ତାହାର ଦାୟିତ୍ୱରେ ରହିଲେ । ଜିଲ୍ଲାବୋର୍ଡ ନିର୍ବାଚନ ହେଲା । ନିର୍ବାଚନରେ ଗତିବାବୁ ଓ ପୂର୍ଣ୍ଣାନନ୍ଦ ସ୍ୱାଇଁ କାକଟପୁର ଅଞ୍ଚଳରେ ଲଢ଼ି ଜିତିଲେ । କଂଗ୍ରେସ କାର୍ଯ୍ୟ କରାଯିବା ପାଇଁ ହୋଟେଲ ସହିତ ଆଉ ଗୋଟିଏ ସିଲେଇମେସିନ୍ ଦୋକାନ କରାଗଲା । ରଣପୁରର ଗଙ୍ଗାଧର ମିଶ୍ର ଏହି ଦୋକାନ ଦାୟିତ୍ୱରେ ରହିଲେ । ଜେଲ୍‌ରୁ ଖଲାସ ହେବା ପରେ ପ୍ରାଣନାଥ ପଟ୍ଟନାୟକ ଓ ଗୁରୁଚରଣ ପଟ୍ଟନାୟକ ବନାରସ ପଢ଼ିବା ପାଇଁ ଗଲେ । ସେଠାରୁ ପ୍ରାଣନାଥବାବୁ ଓ ଭଗବତୀବାବୁ କିଛି ସିଲ୍‌କକନା ଆଣି ଯୋଗାଇଲେ । ହୋଟେଲ, ସିଲେଇ ଦୋକାନ, ସିଲ୍‌କ୍‌କନା ବିକି ଧନରୁ ଯେଉଁ ଲାଭ ମିଳୁଥିଲା ସେଥିରେ କର୍ମୀମାନଙ୍କୁ ଖାଇବା, ବାଟଖର୍ଚ୍ଚ ଦିଆଯାଇ କଂଗ୍ରେସ କାର୍ଯ୍ୟ କରାଯାଉଥିଲା ।

୧୯୩୩ରେ ଏକ ପ୍ରଳୟଙ୍କରୀ ବନ୍ୟାରେ କାକଟପୁର, ଗୋପ ଅଞ୍ଚଳର ବହୁ କ୍ଷତି ହେଲା । ଗାଁଗଣ୍ଡା ଭାସିଗଲା, ଲୋକେ ଖାଇବାକୁ ନପାଇ ବହୁ ଦୁଃଖକଷ୍ଟ ଭୋଗକଲେ । ଲୋକଙ୍କୁ ରିଲିଫ୍ ଦିଆଗଲା । ଗତିବାବୁ ଏହି ରିଲିଫ୍ କାର୍ଯ୍ୟରେ ଗୋପ, କାକଟପୁର ଅଞ୍ଚଳରେ ରହି କାର୍ଯ୍ୟ କଲେ । ଲୋକଙ୍କ ପାଖେ ପାଖେ ରହି କାର୍ଯ୍ୟ କରିବା ପାଇଁ ମନସ୍ଥ କରି କାକଟପୁର ନିକଟ ମୂଳାଗଡ଼ଠାରେ ୧୯୩୫ ମସିହାରେ 'ଗୋପବନ୍ଧୁ ସାଧନାଳୟ' ନାମରେ ଏକ ଆଶ୍ରମ ପ୍ରତିଷ୍ଠା କଲେ । ଲୋକଙ୍କଠାରୁ କାଠ, ନଡ଼ା, ପଇସା ସଂଗ୍ରହ କରି ଆଶ୍ରମଗୃହ ତିଆରି କରାଗଲା । ଲୋକେ ସ୍ୱେଚ୍ଛାରେ ଶ୍ରମଦାନ ଦେଲେ । ଆଶ୍ରମରେ ବଳରାମ ପାଇକରାୟ, ଲୋକନାଥ ରାୟ, ଶ୍ୟାମସୁନ୍ଦର ସ୍ୱାଇଁ, ଇନ୍ଦ୍ରମଣି ନାୟକ, ଜଗନ୍ନାଥ ପରିଡ଼ା, ବିମଳୀ ଦେଇ, ସ୍ଥାୟୀଭାବେ ରହି କାର୍ଯ୍ୟ କଲେ । ପୂର୍ଣ୍ଣାନନ୍ଦ ସ୍ୱାଇଁ କର୍ମୀମାନଙ୍କ ଚଳାଚଳ ପାଇଁ ଚାନ୍ଦା କରି ଚାଉଳ, ପରିବା, ପଇସା ପଠାଉଥିଲେ । ଆଶ୍ରମରେ ସୂତାକଟା, ଲୁଗାବୁଣା କାର୍ଯ୍ୟ କରାଯାଉଥିଲା । ଆଶ୍ରମକୁ କେନ୍ଦ୍ରକରି କଂଗ୍ରେସ କାର୍ଯ୍ୟ ବ୍ୟାପକ ହେଲା ।

୧୯୩୩ରେ ଗାନ୍ଧିଜୀ ଓଡ଼ିଶାକୁ ପଦଯାତ୍ରା କରିବାକୁ ଆସିଥିବା ସମୟରେ ଗତିବାବୁ ସ୍ୱେଚ୍ଛାସେବକ ଭାବେ ତାଙ୍କ ସହିତ ପୁରୀରୁ ପିପିଲି ପର୍ଯ୍ୟନ୍ତ ପଦଯାତ୍ରାରେ ଯାଇଥିଲେ ।

ଗତିବାବୁଙ୍କର କାର୍ଯ୍ୟଦକ୍ଷତାକୁ ଦେଖି ପଣ୍ଡିତ କୃପାସିନ୍ଧୁ ହୋତା ତାହାଙ୍କୁ ସର୍ଦ୍ଦାର ଉପାଧି ଦେଇଥିଲେ । ସେହି ଦିନଠାରୁ ଗତିବାବୁ ସର୍ଦ୍ଦାର ଗତିକୃଷ୍ଣ ନାମରେ ପରିଚିତ ।

୧୯୩୪ରେ ଗତିବାବୁ କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ସଭ୍ୟ ହେଲେ । ଏହି ସଙ୍ଗଠନର ସଭ୍ୟ ହେବାପରେ ପୁରୀ ଜିଲ୍ଲାରେ ଜମିଦାର ବିରୋଧୀ, କୃଷକ ଆନ୍ଦୋଳନ ବ୍ୟାପକ ହେଲା । ସେ ଏହି କୃଷକ ଆନ୍ଦୋଳନକୁ ନେତୃତ୍ୱ ଦେଇ ପରିଚାଳନା କଲେ । ଏହି ଯୋଗୁଁ ଜମିଦାରମାନେ ନଡ଼ିଆ ଚୋର ଭାବେ ତାଙ୍କ ନାମରେ ପୁଲିସ୍‌ରେ ଏତାଲା ଦେଇଥିଲେ ।

ପୁରୀଜିଲ୍ଲାରେ କୃଷକ ସମ୍ମିଳନୀ କରାଯାଇ ଜିଲ୍ଲା କୃଷକସଙ୍ଘ ଗଠନ କରାଗଲା । ଖୋର୍ଦ୍ଧା, ଜଟଣୀ, ପୁରୀ, ନୟାହାଟ, ପିପିଲି ଅଞ୍ଚଳରେ କୃଷକ ସମ୍ମିଳନୀମାନ କରାଯାଇଥିଲା ।

୧୯୩୬।୩୭ରେ ଓଡ଼ିଶା ବିଧାନସଭା ନିର୍ବାଚନ କରାଗଲା । ଏହି ନିର୍ବାଚନରେ ଗୋପ, ନିମାପଡ଼ା, କାକଟପୁର ଅଞ୍ଚଳରୁ ବୃଷୀନେତା ମୋହନ ଦାସ ଓ ଖୋର୍ଦ୍ଧା ଅଞ୍ଚଳରୁ ପ୍ରାଣନାଥ ପଟ୍ଟନାୟକ ଜିତିଲେ । ଏହି ନିର୍ବାଚନରେ ଗତିବାବୁଙ୍କ ଭୂମିକା ଉଲ୍ଲେଖନୀୟ ।

୧୯୪୧ରେ ବ୍ୟକ୍ତିଗତ ସତ୍ୟାଗ୍ରହ କାର୍ଯ୍ୟ ପ୍ରସ୍ତୁତ ଚଳାଇଥିବା ସମୟରେ ଗତିବାବୁ ଓ ପୂର୍ଣ୍ଣାନନ୍ଦ ସ୍ୱାଇଁ ଗିରଫ ହେଲେ । ବିଚାରରେ ଗତିବାବୁଙ୍କୁ ତିନିମାସ ଜେଲ୍‌ଦଣ୍ଡ ଓ ତିନିଶତ ଟଙ୍କା ଜୋରିମାନା କରାଗଲା । ଟଙ୍କାପାଇଁ ଘର କୋରକ କରାଗଲା ।

୧୯୪୨ ଭାରତଛାଡ଼ ଆନ୍ଦୋଳନ ସମୟରେ ଗତିବାବୁ ପୁରୀଜିଲ୍ଲା ବୋର୍ଡ଼ ବୈଠକରେ ଯୋଗ ଦେବାକୁ ଯାଉଥିବା ବାଟରେ ପୁରୀଠାରେ ଗିରଫ ହୋଇ ୧୯୪୪ ମସିହା ପର୍ଯ୍ୟନ୍ତ ଦୀର୍ଘ ଦୁଇବର୍ଷରୁ ଊର୍ଦ୍ଧ୍ୱ ସମୟ ବ୍ରହ୍ମପୁର ଜେଲ୍‌ରେ ଅଟକ ବନ୍ଦୀ ହୋଇ ରହିଲେ ।

ପୂର୍ବରୁ ତାଙ୍କର ସ୍ତ୍ରୀ ଓ ବାପାଙ୍କର ମୃତ୍ୟୁ ହୋଇଥିଲା ଓ ଜେଲ୍‌ରେ ଅଟକ ବନ୍ଦୀ ଥିବା ସମୟରେ ଦୁଇଗୋଟି ଭାଇଙ୍କର ମୃତ୍ୟୁ ଘଟିଲା ।

ଜେଲ୍‌ରୁ ଫେରି ଗତିବାବୁ ଅତ୍ୟନ୍ତ ଦୁଃଖରେ ଦିନ କଟାଇଲେ । ପରିବାରରେ ୪।୫ଟି ଛୋଟ ଛୋଟ ପିଲା, ବୁଢ଼ୀମା, ଦୁଇଗୋଟି ବିଧବା ଭାଉଜ ଓ ଗୋଟିଏ ପାଗଳ ଭାଇର ଦାୟିତ୍ୱ ବହନ କରିବାକୁ ପଡ଼ିଲା । ସମସ୍ତ ବୋଝକୁ ମୁଣ୍ଡାଇ ମଧ୍ୟ ସେ କର୍ମପଥରୁ ଦୂରେଇଯାଇ ନଥିଲେ ।

ବ୍ରହ୍ମପୁର ଜେଲ୍‌ରେ ଗତିବାବୁ କମ୍ୟୁନିଷ୍ଟପାର୍ଟିର ସଭ୍ୟହୋଇ ଫେରିଥିଲେ । ଜେଲ୍‌ରୁ ଫେରି ସେ କାକଟପୁରରେ କମ୍ୟୁନିଷ୍ଟପାର୍ଟି ସଙ୍ଗଠନ ଗଢ଼ିଲେ । ନିଜ ଗ୍ରାମ ପାଟପୁରରେ ଏକ ସୁଦୃଢ଼ ଗ୍ରାମକମିଟି ଗଠନ କଲେ ଓ କୃଷକ ଆନ୍ଦୋଳନ ଚଳାଇଲେ ।

ସ୍ୱାଧୀନତା ପରେ ଦଣ୍ଡର ବିରାମ ମିଳିଲା ନାହିଁ । ଜମିଦାରମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇବା ଯୋଗୁଁ ଓ କମ୍ୟୁନିଷ୍ଟପାର୍ଟି ବେଆଇନ ହେବା ଯୋଗୁଁ ଗତିବାବୁଙ୍କୁ ପୁନଶ୍ଚ ଗୁପ୍ତବାସରେ ରହିବାକୁ ପଡ଼ିଲା । ଦୀର୍ଘ ଦୁଇବର୍ଷ ଗୁପ୍ତବାସରେ ରହିବା ଯୋଗୁ ତାଙ୍କର ସ୍ୱାସ୍ଥ୍ୟରେ ଅବନତି ଦେଖାଦେଲା । ୧୯୫୦ରେ ଗିରଫ ହୋଇ ୧୯୫୨ ପର୍ଯ୍ୟନ୍ତ ପୁରୀ ଜେଲ୍‌ରେ ଅଟକବନ୍ଦୀ ଭାବେ ରହିଲେ ।

୧୯୬୪ ମସିହାରେ ବ୍ୟାଙ୍କ ଜାତୀୟକରଣ, ରାଜାଙ୍କ ଭତ୍ତାକାଟ ଦାବି ନେଇ ସତ୍ୟାଗ୍ରହ କରି ଗିରଫ ହୋଇ ଚାରି ମାସ ଜେଲଦଣ୍ଡ, ୧୯୭୧ରେ ଦରଦାମ ବୃଦ୍ଧି ବିରୁଦ୍ଧରେ ଆନ୍ଦୋଳନ କରି ତିନିମାସ ଜେଲଦଣ୍ଡ ଭୋଗିଲେ ।

୧୯୬୭ରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହେଲେ । ସେ ପୁରୀଜିଲ୍ଲା କମ୍ୟୁନିଷ୍ଟପାର୍ଟିର ସମ୍ପାଦକ, ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକାରୀ କମିଟିର ସଭ୍ୟ, କଣ୍ଟ୍ରୋଲ କମିଶନ ସଭ୍ୟ, ରାଜ୍ୟ କୃଷକ ସଭାର ଉପସଭାପତି ଭାବେ ଦୀର୍ଘଦିନ ଧରି ରହିଥିଲେ ।

୧୯୯୩ରେ ହଠାତ୍ ପଡ଼ିଯିବା ଯୋଗୁ ତାଙ୍କର ଗୋଡ଼ ଭାଙ୍ଗିଗଲା । ଆଉ ଭଲହେଲେ ନାହିଁ । ୧୯୯୩ ଅପ୍ରେଲ ୨୫ ତାରିଖ ଅକ୍ଷୟତୃତୀୟା ଦିନ ତାହାଙ୍କର ମୃତ୍ୟୁ ଘଟିଲା । ବର୍ତ୍ତମାନ ତାଙ୍କର ବିଧବା ସ୍ତ୍ରୀ, ଗୋଟିଏ ପୁଅ, ବୋହୂ, ଗୋଟିଏ ନାତି ଓ ଗୋଟିଏ ନାତୁଣୀ ଏବଂ ବଡ଼ଭାଇ ଦୁଇଜଣଙ୍କର ତିନିଗୋଟି ପୁତୁରା ରହିଛନ୍ତି । ଗୋଟିଏମାତ୍ର ଝିଅ ବିବାହ ହୋଇ ଯାଇଛନ୍ତି ।

ପାଟପୁର ଓ ସାତେଙ୍ଗା ମୌଜାର ଗ୍ରାମବାସୀମାନେ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ "ଗତିକୃଷ୍ଣ ଚିକିତ୍ସାଳୟ" ନାମରେ ଏକ ଡ଼ାକ୍ତରଖାନା ନିର୍ମାଣ କରିଛନ୍ତି ।

—ସ୍ମୃତିକମିଟି ପକ୍ଷରୁ

●

ସୋମନାଥ ପାଣ୍ଡଙ୍କ ଦ୍ୱାରା ଲିଖିତ

# ସର୍ଦ୍ଦାର ଗତିକୃଷ୍ଣ ସ୍ମରଣେ

● ଦେଶବନ୍ଧୁ ସ୍ୱାଇଁ

ବରୁଣେଇ ମାଟି ଲୁହେ ଯାଏ ଭିଜି
ଗତିକୃଷ୍ଣ ଶୋକେ ଅଧୀର ହୋଇ,
ହଂସା ଉଡ଼ିଯାଏ ଝୁପୀ ମୂଲିଆର
ହିମ୍ମତ ଦେବାକୁ ତା 'ବାବୁ' ନାହିଁ ॥୧॥
ଜୋତା, ମୋଜା, ଟୋପି ପିନ୍ଧେନା ତା ବାବୁ
ହୁକୁମାତ କେବେ କରନି କାରେ,
ବାପୁ ଡାକରେ ମାତିଯାଇ ଦିନେ
ଡୋରି ବାନ୍ଧିଦେଲ କଲେଜ ପାଠେ
ସହର ଛାଡ଼ିଣ ଗାଁକୁ ଆସିଲ
ମେଳ କରାଇଲ ମହା ଉନ୍ମାଦେ ।
ରାଜା, ଜମିଁଦାର, ବ୍ରିଟିଶ ଦଲାଲ
କାହାକୁ ନଥିଲ ଟିକେ ଭ୍ରୂକ୍ଷେପ,
କିଏ ଜାଣିଥିଲ ବାଙ୍ଗର ଶରୀରେ
ପୂରି ରହିଥିଲ ଏତେ ବହ୍ନିପ ।
ସାଲିସ ନାହିଁ
ଦେଶ ମାତୃକାର ମୁକତି ପାଇଁକି
ଲଢ଼େଇ ଲଢ଼େଇ ଲଢ଼େଇ ଚାହେଁ ॥୨॥

ସ୍ୱରାଜ ଆସିଲ ତିରଙ୍ଗା ଉଡ଼ିଲ
ଦୁଃଖ ଘୁଞ୍ଚିଲନି ଝୁପୀଘରର,
ସପନ ଭାଙ୍ଗିଲା ମଳା ମୁଣ୍ଡିଆର
ଘରୁ ଘରୁ ଶୁଭେ ଅନ୍ନ ଚିତ୍କାର ।
ତେଲିଆ ମୁଣ୍ଡରେ ତେଲ ବୋଳା ହେଲା
ଲୁଖୁରା ମୁଣ୍ଡଟି ସେହି ଲୁଖୁରା,
ମାଂସ ଲୁଟେ ନାହିଁ କାହା କୁକୁରକୁ
ଗରିବର ଚୂଲି ରହେ ଅଜଳା ।
ସର୍ଦ୍ଦାର ତୁମେ
ସହି ନପାରିଲ ଏ ତାରତମ୍ୟକୁ
ପୁଣି ଝାସ ଦେଲ ନୂଆ ସଂଗ୍ରାମେ ॥୩॥

ସର୍ବହରାର ନେତା ବୋଲି ଦଳେ
ମଞ୍ଚ ଆଡ଼ମ୍ବରେ କୃତ୍ରିମ ପିଟି,
କଥାକେ କଥାକେ 'ନିଆଁ ଜଳିବରେ'
'ଲଢ଼େଇ ହେବରେ' ସ୍ଲୋଗାନ ଫିଙ୍ଗି ।
ସେହିମାନେ କିନ୍ତୁ କ୍ଷମତା ପାଇଲେ
ମନେ ପଡ଼େନାହିଁ ସାଥୀଙ୍କ ମୁଖ,
ଟିଙ୍କ ପାଲଟିଣ ଶୋଷଣ କରନ୍ତି
କଙ୍କାଳ ଶରୀରୁ ରକ୍ତ ଓ ରସ ।
ଖାଦର ନାହିଁ
କ୍ଷମତା ନିଶାରେ ପାଗଳ ହୋଇଣ
ଚନ୍ଦ୍ର ସୂର୍ଯ୍ୟ କିଛୁ ମାନନ୍ତି ନାହିଁ ।।୪।।

ତୁମେ ଗତକୃଷ୍ଟ ଥିଲ ବ୍ୟତିକ୍ରମ
କ୍ଷମତା ତୁମକୁ କରିନ ଭୋଳ,
ଦଳୀୟ ପଦବୀ ଧନ-ରତ୍ନ ମୋହ
ପାଇଁ କେବେ ହୋଇନାହଁ ବ୍ୟାକୁଳ ।
ସେଇଥି ପାଇଁ
କୋଟି ହୃଦୟରେ ରହିଗଲ ତୁମେ
ପବିତ୍ର ଅଲିଭା ପ୍ରଦୀପ ହୋଇ ।।୫।।

ସପନ ତୁମର ରହିଗଲା ଅଧା
କାଳ ଡାକରାରେ ଚାଲିଲ ତୁମେ,
ପରତେ ନହୁଏ ତଥାପି କାହାର
ଛାଡ଼ି ଯାଇଅଛ ଆମକୁ ତୁମେ ।
ମରଣଜୟୀ
ଆଶିଷ ଦିଅ ଏ ନୂତନ ପୀଢ଼ିକୁ
ତୁମର ଆଦର୍ଶେ ଚାଲିବା ପାଇଁ ।।୬।।



# 'ସର୍ଦ୍ଦାର' ଗଲ ଚାଲି

ସର୍ଦ୍ଦାର ତୁମେ ଗଲ ଚାଲି,
ଅଢ ଆପଣାର ଏ ମାଟିର ମମତା ଭୁଲି
ସରଗପୁରକୁ ଗଲ ଚାଲି,
ସେଠାରେ କ ତୁମ ପାଇଁ କେଉଁଦନୁ
ସିଂହାସନ ପଡ଼ିଥିଲା ଖାଲି···
ସର୍ଦ୍ଦାର ଗଲ ଚାଲି ।

ବନ୍ଧୁ ପୂର୍ଣ୍ଣାନନ୍ଦ'    ସାଥୀ 'ବାଳକୃଷ୍ଣ'
ସଖା 'ପୁରୁଷୋତ୍ତମ'
'ଗୁଣନିଧି' 'ମଧୁ'    'ନୀଳକଣ୍ଠ' 'ଯଦୁ'
'ପ୍ରାଣବନ୍ଧୁ' ଆଉ 'ଶ୍ୟାମ'
ସେଧାମେ ତକେଇ    ବସିଥିଲେ ଚାହିଁ
ନେଲେ ତୁମକୁ ସଂଖୋଳି,
ନିର୍ବିବାଦରେ    ଅର୍ପିବେ ବୋଲି
ସେଠିକାର ସର୍ଦ୍ଦାରୀ···
ସର୍ଦ୍ଦାର ଗଲ ଚାଲି ।

'ନିଧି ସ୍ୱାଇଁ'ଙ୍କର    ସଂସାର ଅର୍ଗଳି
ରଖି ପାରିଲାନି ବାନ୍ଧି,
ଅଧ୍ୟୟନ କାଳେ    ଅନ୍ତର କାନ୍ଦିଲା
ଦେଲ ପୋଥି ଡୋର ବାନ୍ଧି,
ମୋହନ ଦାସଙ୍କ    ମୋହନ ମୁରଲୀ
କରିଲା ତୁମକୁ ବାଇ
ସତ୍ୟାଗ୍ରହୀ ସାଜି ଲୁଣ ମାରିବାକୁ
'ଇଂଚୁଡ଼ି' ଗଲ ଧାଇଁ ।
'ଇରମ' ସଂଗ୍ରାମ    ଦେଲାନି ବିଶ୍ରାମ
'କୁହୁଡ଼ି' ଆସିଲ ଫେରି,
ବ୍ରିଟିଶ୍ ଫଉଜ    ବ୍ୟୂହ ଭେଦକରି
ଆଗକୁ ଧସିଲ ଠେଲି ···
ସର୍ଦ୍ଦାର ଗଲ ଚାଲି ।

ଖର୍ବ ଦେହର,    ହୃଦୟ କନ୍ଦରେ
ଗର୍ବ ନଥିଲା,
ନଥିଲା କ୍ଷମତା    ଲୋଭର ଲିପ୍ସା,
ଦଳିତ ପତିତ ନିଷ୍ପେଷିତର
ସେବାହିଁ ଥିଲା ନିଶା, ,

ଦୁର୍ନୀତି ବିରୁଦ୍ଧେ     ସଂଗ୍ରାମ କରିଛି
ଦୃପ୍ତ ସ୍ୱର ତୋଳି
ସ୍ୱାର୍ଥକୁ ଦେଇ ବଳୀ···
ସର୍ଦ୍ଦାର ଗଲ ଚଳି ।

ଜାତୀୟ ସମସ୍ୟା     ସ୍ଥାନୀୟ ସମସ୍ୟା
ଉପୁଜିଛି ଯହିଁ ଯେବେ,
ଦୁଃସ୍ଥ ଜନତାର     ନେତୃତ୍ୱ ନେବାକୁ
ପଛେଇ ଯାଇନ କେବେ,
ସଭା ସମିତିରୁ     ଅନ୍ୟାୟ ବିରୁଦ୍ଧେ
ଶାର୍ଦ୍ଦୂଳ ସ୍ୱର ତୋଳି,
ଭ୍ରଷ୍ଟାଚାରୀଙ୍କୁ     ଘାଏଲ କରିଛି
(ଜନତାର) କରତାଳି ଜିତ ମାରି,
ଗଲ ଆଜଠୁଁ ଝାଉଁଳି···
ସର୍ଦ୍ଦାର ଗଲ ଚଳି ।

ଆଜ କାଲିକାର     ରାଜନୀତି ପେଷା
ମଦ ମନ୍ଦାକିନୀ ନିଶା,
ମାଂସ ପେଶୀ ବଳ     ହିଂସା ଆଚରଣ,
ଚୁରିକାଭୁଜାଲି ଭୂଷା,
ମର୍ଦ୍ଦ ପଣିଆଁର     ବାହ୍ୱାସ୍ଫୋଟ ମତ୍ତ
ପର ଉତ୍ପୀଡନ ପେଷା
ତମ ଭୂଲେ ସେତ     ନର୍ଦ୍ଦମା କୀଟ
ଶାଗୁଣା, ଚୁଚୁନ୍ଦ୍ରା, ମୂଷା,
ତୁମ ନୀତି ଆଦର୍ଶ     ନିଆଁର ଝୁଲକେ
· (ତାଙ୍କ) ପଶୁବଳ ଯାଉ ଜଳି···
ସର୍ଦ୍ଦାର ଗଲ ଚଳି ।

ପ୍ରାପ୍ତ ବୟସେ     ବିଦାୟ ଦେଇନ
ଏ ପୁରର ମାୟା ଭୁଲି
ଆତ୍ମା ତୁମ ଲଭୁ     ଚିର ପ୍ରଶାନ୍ତି
ଘେନ ଆମ ଶ୍ରଦ୍ଧାଞ୍ଜଳି
ସର୍ଦ୍ଦାର ଗଲ ଚଳି ।



ଉତ୍କଳସଂଗ୍ରାମୀ ସ୍ମୃତି ସମିତି
ଜାଜପୁର,

( ୪ର୍ଥ ପୃଷ୍ଠାର ଅବଶିଷ୍ଟାଂଶ )

ମଣିଷର ମଣିଷତା ପ୍ରକାଶପାଏ ଅନ୍ୟ ମଣିଷ ସହିତ ସମ୍ପର୍କ ଭିତରେ । ମଣିଷକୁ ଭଲ ପାଇବା, ସମସ୍ତଙ୍କୁ ସମାନ ଭାବରେ ଦେଖିବା, ଏବଂ ମଣିଷର କଲ୍ୟାଣ ଲାଗି ନିଜକୁ ଉତ୍ସର୍ଗ କରିଦେବାରେ ତାହା ପରିସ୍ଫୁଟ ହୁଏ । ସେ ମଣିଷକୁ କେବଳ ହୃଦୟରେ ଭଲ ପାଉ ନଥିଲେ, ସେ ତାକୁ ନିଜର ମନ ଓ ବିଶ୍ୱର ବୁଦ୍ଧି ଦେଇ ଦେଖୁଥିଲେ । ତେଣୁ ଯେଉଁ କେତେକ ଲୋକ ସବୁ ମଣିଷଙ୍କର ସମସ୍ତ ଅମଙ୍ଗଳ କାରଣ, ଯେଉଁମାନେ ସକଳ ଦୁଃଖ, ନିର୍ଯାତନା ଓ ଶୋଷଣରେ ହେତୁ, ସେମାନେ ଥିଲେ ତାଙ୍କଲାଗି ସେହି ମଣିଷ ତାଲିକାରୁ ବହିର୍ଭୂତ । ସେହିପରି କେତେକ ମଣିଷଖିଆଙ୍କ କବଳରୁ ଅନ୍ୟମଣିଷଙ୍କୁ ରକ୍ଷା ଓ ଓ ମୁକ୍ତ କରିବାର ଉଦ୍ୟମ ଭିତରେ କେବଳ ଜଣେ ନିଜର ପ୍ରକୃତ ମଣିଷତାର ପରିଚୟ ଦେଇପାରେ । ତାହାବିନା ମଣିଷକୁ ଭଲ ପାଇବାର ପରିଣାମ କେବଳ ନିରର୍ଥକ ନୁହେଁ, କେତେକ କ୍ଷେତ୍ରରେ କ୍ଷତିକାରକ ମଧ୍ୟ । କାରଣ ତାହା ସେଇ ମଣିଷଖିଆଙ୍କର ପ୍ରକୃତ ରୂପକୁ ଘୋଡ଼ାଇବାକୁ ଯାଇ ସାଧାରଣ ମଣିଷର ନିର୍ଯାତିତ ଜୀବନକୁ ପୂର୍ବଜନ୍ମ ଅଭିଶାପ ଓ ଚିରନ୍ତନ ବୋଲି ଘୋଷଣା କରେ । ମଣିଷ ଜୀବନର ଅସଲ ଦୁଃଖର କାରଣକୁ ଆବୃତ୍ତ ଓ ଲୁକ୍‌କାୟିତ କରିବା ଦ୍ୱାରା ମାନବଜାତିର ବିକାଶକୁ ଅନାବଶ୍ୟକ କରିଦିଏ ।

ଗଡ଼ବାବୁଙ୍କର ସେଇ ମାନବ ପ୍ରେମ ଏତେଦୂର ବଳିଷ୍ଠ, ପ୍ରଖର ଓ ଅନାବିଳ ଯେ ତାହା ସେଇ ପ୍ରସ୍ତରର ଆବରଣକୁ ଅକ୍ଲେଶରେ ଭେଦ କରିଯାଏ । ତାଙ୍କର ବୁଦ୍ଧି ପାଇଲା ବେଳୁ ସେ ମାନବତା ରକ୍ଷା ଓ ମୁକ୍ତି ଲାଗି ରଣାଙ୍ଗନରେ ଠିଆ ହୁଅନ୍ତି କିଶୋର ଅବସ୍ଥାରେ କଲେଜ ଛାଡ଼ି ସେ ଝାସ ଦିଅନ୍ତି ସ୍ୱାଧୀନତା ସଂଗ୍ରାମରେ । କଂଗ୍ରେସରେ ଯୋଗ ଦିଅନ୍ତି ତାହା ତାଙ୍କୁ ଟାଣିନିଏ ଗାନ୍ଧୀବାଦ ଆଡ଼କୁ । ସେ ପଥରେ ଅଗ୍ରସର ହେବାରେ ତାଙ୍କର ସେଇ ମାନବପ୍ରେମ ପ୍ରତିବନ୍ଧକର ସମ୍ମୁଖୀନ ହୁଏ । ସେଇ ମଣିଷକୁ ଭଲ ପାଇବାକୁ ଯାଇ ଲୋକଙ୍କର ଦିନଦିନ ଶୋଷଣ ଅତ୍ୟାଚାର ବିରୁଦ୍ଧରେ ଲଢ଼େଇରେ ନିଜକୁ ନିୟୋଜିତ କରନ୍ତି । ତାହା ତାଙ୍କୁ ଟାଣିନିଏ କୃଷକ ଆନ୍ଦୋଳନ ଭିତରକୁ । ତାର ଭିତର ଦେଇ ସେ ପହଞ୍ଚନ୍ତି କମ୍ୟୁନିଷ୍ଟ ଆନ୍ଦୋଳନର ମାର୍କସବାଦରେ । ସେଠାରେ ସେ ଦେଖନ୍ତି ମାନବ ପ୍ରେମର ଚରମ ଉତ୍କର୍ଷର ପଥ । ସେଇ ପଥରେ ସାମୟିକଭାବେ ଯେତେ ଉତ୍‌ଥାନ, ପତନ ତ୍ରୁଟି, ବିଚ୍ୟୁତି ଘଟିଲେ ବି ତାହା ସଦା ମାନବିକତାର ଯଥାର୍ଥ ଲକ୍ଷ୍ୟ, ଆଦର୍ଶ ପ୍ରତି ସଦା ଅବିଚଳ ଓ ଅନୁରକ୍ତ । ତାର ସେଇ ଅନ୍ତିମ ପରିଣାମ ଯେପରି ଅନ୍ୟଥା ନାହିଁ, ତାର ସେଇ ପଥରେ ମଧ୍ୟ ଅନ୍ୟ ବିକଳ୍ପ ନାହିଁ ।

ଗଡ଼ବାବୁ ଯେ ମାର୍କସବାଦ ତତ୍ତ୍ୱ ଓ ସାହିତ୍ୟ ବିଷୟରେ ଖୁବ୍ ଗୋଟାଏ ଧୁରନ୍ଧର ତାହା ନୁହେଁ । ମାର୍କସ-ବାଦରେ ନିଜକୁ ମହାପଣ୍ଡିତ ଓ ନିଜ ଦେଶ ଓ ମାନବ ପ୍ରେମକୁ ପରାକାଷ୍ଠାର ଶିଖରରୂପେ ପ୍ରଚାର କରୁଥିବା ବହୁ ଲୋକେ ସମାଜରେ ଦେଖାଯାଆନ୍ତି । ତାଙ୍କ ଭିତରୁ କେତେକ କମ୍ୟୁନିଷ୍ଟପାର୍ଟି ଓ ସଂଗ୍ରାମ କ୍ଷେତ୍ରରୁ ଜୀବନ ଧରି ପଳାୟନ କଲାବେଳେ ଗଡ଼ବାବୁ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେଥିରେ ଯେ ଅଟଳ ରହିଛନ୍ତି, କ'ଣ ତାର କାରଣ ? ସେଇ କାରଣକୁ ଅନାବୃତ ଓ ଆଲୋଚନା କରିବା ଆଜି ପ୍ରତ୍ୟେକ କମ୍ୟୁନିଷ୍ଟ ପକ୍ଷରେ ଏକ ଅପରିହାର୍ଯ୍ୟ କର୍ତ୍ତବ୍ୟ । ଯେକୌଣସି ଦେଶପ୍ରେମୀ ଓ ମାନବ ପ୍ରେମୀଙ୍କ ପକ୍ଷରେ ତାକୁ ଏଡ଼ିଦେଇ ଯିବା ଅସମ୍ଭବ । ଆଜି କମ୍ୟୁନିଷ୍ଟ ଆନ୍ଦୋଳନ ଭଙ୍ଗା ଅବସ୍ଥାରେ ସବୁ ଦେଶପ୍ରେମୀ ନେତା ଓ କର୍ମୀମାନେ ଦେଶସେବାକୁ ନିଜର ଆତ୍ମସେବାର ଆୟୁଧ କଲାବେଳେ ଏବଂ ଧର୍ମର ପ୍ରବକ୍ତାଗଣ ମାନବବାଦର ପ୍ରଚାର ନାମରେ ଅନ୍ୟ ଧର୍ମର ଲୋକଙ୍କର ଗଳାକଟାର ଆହ୍ୱାନ ଦେଉଥିଲା ବେଳେ ଗଡ଼ବାବୁଙ୍କ ସେଇ ଜୀବନ ସମସ୍ତଙ୍କ ପକ୍ଷରେ ଗଭୀର ପ୍ରଣିଧାନର ବିଷୟ । କାରଣ ତାଙ୍କର ସେଇ ଅନାବିଳ ମାନବପ୍ରେମ ହେଉଛି ସେହିସବୁର ଏକମାତ୍ର ଉତ୍ତର ।

ଲୋକଙ୍କ ପାଇଁ କାନ୍ଦିବା, ତାଙ୍କପାଇଁ ଲଢ଼ିବା, ତାଙ୍କ ସେବାରେ ନିଜକୁ ନିୟୋଗ କରିବା—ପଦେ କଥାରେ ତାଙ୍କ ପାଖରେ ନିଜକୁ ସମର୍ପି ଦେବାକୁ ଆମେ ମାନବିକତାର ସର୍ବୋଚ୍ଚ ପରାକାଷ୍ଠା ବୋଲି ମନେକରୁ । ତାହା ଯେପରି ଏକ ଦିଗରେ ମଣିଷର ଦୁଃଖ ଲାଘବର କାରଣ, ସେହିପରି ଅନ୍ୟଦିଗରେ ତାହା, ଗଲ୍ଲ ଲୋକର ମାନ, ସମ୍ମାନ, ପ୍ରଭାବ ଓ ପ୍ରତିପତ୍ତି ବୃଦ୍ଧିର ଉପାୟ । ତାହା ମଧ୍ୟ ବ୍ୟକ୍ତିମାନବର ସୁଖ, ସୁବିଧା ସୋପାନ ନିର୍ମାଣ କରିଥାଏ । ତେଣୁ ନିର୍ବାଚନରେ ଭୋଟ ଓ ମନ୍ତ୍ରୀ ପଦ ପ୍ରାପ୍ତି ଲାଗି ମଣିଷ ପକ୍ଷରେ ମଧ୍ୟ ଏକ ଅନିବାର୍ଯ୍ୟ ଆବଶ୍ୟକତା ।

କିନ୍ତୁ ଗତିବାବୁଙ୍କ ମାନବସେବା ଓ ମଣିଷପଣିଆର ଧାରଣା ତାଠାରୁ ପୂର୍ଣ୍ଣ ଫରକ୍—ତାର ସମ୍ପୂର୍ଣ୍ଣ ବିପରୀତ । ସେ ତାକୁ କୌଣସି ଲେଖା, ଶାସ୍ତ୍ର, ସନ୍ଦର୍ଭ ଦ୍ୱାରା ପ୍ରକାଶ କରିନାହାନ୍ତି । ତାକୁ ସେ ପ୍ରତିପାଦିତ କରନ୍ତି ଉତ୍ସର୍ଗୀକୃତ ଜୀବନର ଜ୍ୱଳନ୍ତ ଦୃଷ୍ଟାନ୍ତ ଦ୍ୱାରା କାର୍ଯ୍ୟ କ୍ଷେତ୍ରରେ ।

ମଣିଷର ମଣିଷପଣିଆ ସେତିକିବେଳେ ପ୍ରକାଶ ପାଏ ଯେତେବେଳେ ସେ ଅନ୍ୟ ମଣିଷ ସହିତ ମିଶି ଏକାକାର ହୋଇଯାଏ । ଅର୍ଥାତ୍ ଅନ୍ୟଭିତରେ ନିଜକୁ ଦେଖିବା ଓ ନିଜ ଭିତରେ ଅନ୍ୟକୁ ଦେଖିପାରେ । ଆମ ଭାରତୀୟ ଭାଷାରେ କହିଲେ—'ଏକାତ୍ମ' ହୋଇଯିବା । ଯେତେବେଳେ ଅନ୍ୟ ମଣିଷର ଦୁଃଖକୁ ସେପରି ନିଜର ଯାତନାଭାବେ ଅନୁଭବ କରେ ସେହିପରି ସବୁ ମଣିଷର ମାନବିକ ଭାବକୁ ମଧ୍ୟ ସେ ଅଂଶୁସ୍ପ କରେ । ସେମାନଙ୍କର ମାନବିକ ଭାବଦ୍ୱାରା ନିଜେ ଅଧିକ ବଳୀୟାନ ହୋଇଉଠେ । ସେହି ସୁଗୋପିତ ଜୀବନ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ, ନାମସ୍ଥାନ, ଗୋଷ୍ଠୀସ୍ଥାନ, ପରିଚୟଶୂନ୍ୟ ଅଗଣନ ମଣିଷଙ୍କର ଅନ୍ତର୍ନିହିତ ଇଚ୍ଛା ଭାବନା, ଆକାଂକ୍ଷାର ଆଧାର ହେବାଦ୍ୱାରା ସେଇ ପୁଞ୍ଜୀଭୂତ ମାନବିକ ଉତ୍ତାପ, ନିଜର ମନ, ପ୍ରେମକୁ ଅଧିକ ପରିପୁଷ୍ଟ ଓ ପ୍ରଜ୍ୱଳିତ କରେ ସେତେବେଳେ ସେ ଆଉ କ୍ଷୁଦ୍ର ଚିନ୍ତା, ସଙ୍କୀର୍ଣ୍ଣ ଦୃଷ୍ଟି ଓ ଅନୁ ସ୍ୱାର୍ଥର ମୋହରେ ଆବଦ୍ଧ ନ ହୋଇ ତାର ଊର୍ଦ୍ଧ୍ୱକୁ ଗତିକରେ । ସେଇ ପ୍ରକ୍ରିୟାର ଏକ ଜୀବନ୍ତ ପ୍ରତିଫଳନ ଗତିବାବୁ ।

ଲୋକ ସାଧାରଣଙ୍କ ପ୍ରତି ଅଶେଷ ଶ୍ରଦ୍ଧା, ସାଥୀମାନଙ୍କ ପ୍ରତି ଅନାବିଳ ସ୍ନେହ, ପାର୍ଟି ପ୍ରତି ଅଟଳ ଅନୁରକ୍ତି, ବିରୋଧୀଦଳ ଲୋକଙ୍କ ସହ ଅକପଟ ଆଚରଣ, ପ୍ରତ୍ୟେକ କାର୍ଯ୍ୟରେ ଆନ୍ତରିକ ନିଷ୍ଠା ଓ ନିଜର ଆଦର୍ଶ ପାଳନ ଲାଗି ଆତ୍ମତ୍ୟାଗକୁ ଅପ୍ରବଚନ କରି ଧରିବା ଗତିବାବୁଙ୍କ ଜୀବନଦର୍ଶନ ଓ କର୍ମର ପଦ୍ଧତି ହୋଇଆସିଛି ।

ଗତିବାବୁଙ୍କର ସେହି ମାନବ ପ୍ରେମର ଜାଜ୍ୱଲ୍ୟମାନ ସଂକେତ ଆମକୁ ସଦା ନିର୍ଭୁଲ ପଥର ସନ୍ଧାନ ଦେଉଥିବ । ଶ୍ରାଦ୍ଧ ଅବସରରେ ଏହାହିଁ ମୋର ଶ୍ରଦ୍ଧାଞ୍ଜଳି ।

---

# ଚରିତ୍ର ନୁହେଁ ମୋ ପାଇଁ ଈଶ୍ୱର

● ସନ୍ଧ୍ୟାରାଣୀ ସେନାପତି
ବେଳାଭୂମି ହାଇସ୍କୁଲ

ହେ ଭାରତର ଅମୃତ ସନ୍ତାନ
ତୁମେ ଥିଲ ସୃଷ୍ଟିର ଗୌରବ
ତୁମେ ମହାତ୍ମା, ତୁମେ ମହାନ୍
ମନେ ପଡ଼େ ତୁମ କଥା
ଆଜିର ଏ ଶ୍ରାଦ୍ଧ ଦିବସରେ ॥୧॥

× × ×

ମୃତ୍ୟୁର କି ଶକ୍ତି ନାହିଁ
ତୁମ ସୃଷ୍ଟିଶୀଳ ପାପୁଲିକୁ ପଙ୍ଗୁ କରିଦେବ
ତୁମ ଦିଗବଳୟ ଚୌହଦ୍ଦିରେ
ଘେର ବାନ୍ଧିନେବ
କାରଣ ତୁମେ ଗୋଟେ ଚରିତ୍ର ନୁହଁ
ମୋ ପାଇଁ ଈଶ୍ୱର ॥୫॥



---

ସ୍ମରଣିକା ପ୍ରକାଶନ କମିଟି, କାକଟପୁର ଦ୍ୱାରା ପ୍ରକାଶିତ ଓ କିରଣ ପ୍ରକାଶିନୀ, କଟକରେ ମୁଦ୍ରିତ
ମୂଲ୍ୟ—ଅମୂଲ୍ୟ (ସ୍ମୃତି କମିଟିକୁ ସ୍ୱେଚ୍ଛାକୃତ ଦାନ)




ସ୍ୱାଧୀନ ସଂଗ୍ରାମୀଙ୍କ ମେଳରେ ଗଣ୍ଡିବାବୁ